ପ୍ରକାଶକ :
ଶ୍ରୀ ଅନିନ୍ଦ୍ୟଦ୍ୟୁତି ଚକ୍ରବର୍ତ୍ତୀ
ସତ୍‌ସଙ୍ଗ ପବ୍ଲିଶିଂ ହାଉସ୍
ପୋ: ସତ୍‌ସଙ୍ଗ, ଦେଓଘର, ଝାଡ଼ଖଣ୍ଡ



ପ୍ରଥମ ସଂସ୍କରଣ :
ସ୍ନାନୋତ୍ସବ, ୨୭ ମଇ, ୧୯୯୭
ତ୍ରୟୋଦଶ ସଂସ୍କରଣ, ଜାନୁୟାରୀ, ୨୦୧୦

ଅନୁବାଦକ :
ଶ୍ରୀ ଯତୀନ୍ଦ୍ର ମୋହନ ବସୁ

ମୁଦ୍ରକ : ବେଙ୍ଗଲ ଫୋଟୋଟାଇପ କୋମ୍ପାନୀ
୪୬/୧, ରାଜାରାମମୋହନ ରାୟ ସରଣି
କଲିକତା-୭୦୦ ୦୦୯

ମୂଲ୍ୟ : ଅଠର ଟଙ୍କା

NAREER NEETI by Sri Sri Thakur Anukul Chandra
13th Edition, 2010

Price : Rs. 18.00 Only

# ଭୂମିକା

ଆଦର୍ଶନିଷ୍ଠ, ଧର୍ମାଶ୍ରୟୀ, ପବିତ୍ର, ଉନ୍ନତ ଗୃହଜୀବନର ଭିତ୍ତି ଉପରେ ଛିଡ଼ାହୋଇ ହିଁ ମାନବ-ସମାଜ ନିରନ୍ତର ସର୍ବାଙ୍ଗୀନ କଲ୍ୟାଣ ଓ ଅଭ୍ୟୁଦୟର ପଥରେ ଆଗେଇ ଚାଲିପାରେ । କାରଣ, ଜୀବନର ସାମଗ୍ରିକ ବିକାଶ ଓ ସମାଜ-ସଂସ୍ଥିତିର କ୍ରମାଗତି ଓ ବିବର୍ତ୍ତନ ପାଇଁ ଦରକାର ଯୁଗପତ୍ ଧର୍ମ, ଅର୍ଥ, କାମ, ମୋକ୍ଷ,—ଏହି ଚତୁର୍ବିଧ ପୁରୁଷାର୍ଥ ସାଧନ । ଆଉ, ଗାର୍ହସ୍ଥ୍ୟ ଆଶ୍ରମହିଁ ଏହି ପୂର୍ଣ୍ଣାଙ୍ଗ ଜୀବନଯାଗର ପୂତ ଯଜ୍ଞଭୂମି । ଗୃହର ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ଗୃହିଣୀ । ଗୃହ-ରଚନାର ସୂତ୍ରପାତ ବିବାହରୁ । ବିହିତ ବିବାହ ଗୃହ ମନ୍ଦିରରେ ଉଦ୍‌ବର୍ଦ୍ଧନ ଓ ସୁପ୍ରଜନନକୁ ହିଁ ସୁପ୍ରତିଷ୍ଠିତ କରେ । ସଂସାର ଆନନ୍ଦ-ନିକେତନ ହୋଇ ଗଢ଼ିଉଠେ । କିନ୍ତୁ ବ୍ୟତ୍ୟୟୀ ବିବାହରେ ଫଳ ହୁଏ ଠିକ୍ ବିପରୀତ—ପୁରୁଷ-ନାରୀ ସାରାଜୀବନ ଏକ ଘରେ ରହି ମଧ୍ୟ କେହି କାହାରି ଆପଣାର ହୋଇ ପାରନ୍ତି ନାହିଁ, କେହି କାହାରିକୁ ଆପଣାର କରି ପାରନ୍ତି ନାହିଁ, ବ୍ୟର୍ଥତା ଓ ତିକ୍ତତାର ଜ୍ୱାଳାରେ ଜଳିପୋଡ଼ି ମରନ୍ତି ; କ୍ଷୋଭରେ, ଦୁଃଖରେ, ଆକ୍ରୋଶରେ ଅଯଥା ଆଘାତ କରି, ପ୍ରତ୍ୟୁତ୍ତରରେ ମର୍ମନ୍ତୁଦ ଆଘାତ ପାଆନ୍ତି । ଏହି ଭାବରେ ଅଶାନ୍ତି ଉଲ୍ଲମ୍ଫୀ ହୋଇଚାଲେ । ଫଳରେ, ଜୀବନ ଓ ଜନନ ଉତ୍କର୍ଷର ସନ୍ଧାନ ନ ପାଇ ହତାଶା, ଅବସାଦ ଓ ଅପକର୍ଷର କୋଳରେ ଢଳିପଡ଼େ ।

ମହାମୂଲ୍ୟ ମାନବ-ଜୀବନର ଏହି ଶୋଚନୀୟ ଅପଚୟ ଓ ବ୍ୟର୍ଥତାକୁ ପରିହାର କରିବା ପାଇଁ ଦରକାର ପୁରୁଷ-ନାରୀ ସମସ୍ତଙ୍କର ବିଶେଷତଃ ନାରୀର ସମୁଚିତ ଶିକ୍ଷା, ଯାହାଫଳରେ ତାହାର ଅନ୍ତରରେ ଗଭୀର ଜୀବନ-ବୋଧ ଉପ୍ତ ହୁଏ, ଶ୍ରେୟ ସନ୍ଧାନ ଅକାଟ୍ୟ ହୋଇଉଠେ, କୌଣସି ହୀନ କାମନାର କୁହୁକରେ ପଡ଼ି ସେ ଅଶ୍ରେୟ ନିକଟରେ ଆତ୍ମଦାନ ନ କରେ । ପୁଣି, ତାହାର ବୈଶିଷ୍ଟ୍ୟ-ନିହିତ ନିଷ୍ଠା, ଧର୍ମ, ଶୁଶ୍ରୂଷା, ସେବା, ସାହାଯ୍ୟ, ସଂରକ୍ଷଣ, ପ୍ରେରଣା ଓ ପ୍ରଜନନ-ସାମର୍ଥ୍ୟର ସାତ୍ୱତ ଅନୁଶୀଳନ ଓ

ପ୍ରୟୋଗରେ ସଂସାର, ଜାତି ଓ ଜଗତକୁ ଅମରାର ଅମୃତତୀର୍ଥରେ ପରିଣତ କରି ଜୀବନ ସାର୍ଥକ ଓ ମଧୁମୟ କରି ତୋଳିପାରେ ।

ଦୁହିତା, ଭଗିନୀ, ଜାୟା, ଜନନୀ, ଗୃହିଣୀ ଇତ୍ୟାଦି ନାନାରୂପେ ଜୀବନର ନାନା ଅଧ୍ୟାୟରେ ନାରୀର ଶିକ୍ଷଣୀୟ ଓ କରଣୀୟର ଅନ୍ତ ନାହିଁ। ସେହିସବୁ ଟିକିନିଖି ବ୍ୟାପାର ପରମ ପ୍ରେମମୟ ଶ୍ରୀଶ୍ରୀଠାକୁର ଏହି 'ନାରୀର ନୀତି' ମାଧ୍ୟମରେ ପ୍ରାୟ ୩୦ ବର୍ଷପୂର୍ବେ ପରିବେଷଣ କରନ୍ତି । ଏହି ପୁସ୍ତକର ଶ୍ରୁତଲିଖନ ଓ ପାଣ୍ଡୁଲିପି ପ୍ରଣୟନରେ ଶ୍ରୀଯୁକ୍ତ ପଞ୍ଚାନନ ସରକାର ବିଶେଷ ଶ୍ରମ ସ୍ୱୀକାର କରନ୍ତି । ଏ ଜୀବନ୍ତ ବାସ୍ତବ ସମସ୍ୟାବଳୀର କାର୍ଯ୍ୟକାରଣ ସମନ୍ୱିତ ଏହି ବାସ୍ତବ ସମାଧାନଗୁଡ଼ିକ ଦ୍ୱନ୍ଦ୍ୱ-ସଂଘାତମୟ ଜଟିଳ ଜୀବନ-ପଥରେ ପରମ ପାଥେୟରୂପେ ପ୍ରତିଭାତ ହୁଏ ।

ନାରୀ-ପୁରୁଷ ସମସ୍ତେ ନିୟତ ସଂସାର-ସମୁଦ୍ର ମନ୍ଥନ କରି ସୁଖସୁଧା ଉତ୍ତୋଳନ କରିବା ପାଇଁ ବ୍ୟସ୍ତ, କିନ୍ତୁ ଆମ୍ଭମାନଙ୍କର ଅଜ୍ଞତା ଓ ପ୍ରବୃତ୍ତିପରାୟଣତା ଲାଗି ଅନେକ ସମୟ ସୁଧା ବଦଳରେ ଗରଳର ଆର୍ବିଭାବ ହୁଏ । ସେହି ହଳାହଳରେ ଜର୍ଜରିତ ନ ହୋଇ ତାକୁ କିପରି ଭାବରେ ଅମୃତରେ ପର୍ଯ୍ୟବସିତ କରାଯାଏ ତାହାରି ଅପୂର୍ବ କଳା-କୌଶଳ ଓ ଅମିୟ-ସଂକେତ ଏହି ପୁସ୍ତକର ପତ୍ରେ ପତ୍ରେ ସନ୍ନିବେଶିତ । ସମସ୍ତେ ବିଶେଷ କରି ମାଆମାନେ ଯଦି ସଶ୍ରଦ୍ଧଚିତ୍ତରେ ଏହି ଗୁଡ଼ିକର ଅନୁଧାବନ ଓ ଅନୁସରଣ କରନ୍ତି, ତେବେ ସବୁ ସଙ୍କଟ ଏଡ଼ାଇ ସେମାନେ ଯେ ସଂସାର ସୁଖର କରି ତୋଳି ପାରିବେ, ସେ ବିଷୟରେ କୌଣସି ସନ୍ଦେହ ନାହିଁ । କଥାରେ କହନ୍ତି— ''ସଂସାର ସୁଖର ହୁଏ ରମଣୀର ଗୁଣେ'' । ସତ୍ୟହିଁ ତାହା । ସେମାନଙ୍କର ସ୍ନେହ, ପ୍ରୀତି ଓ ଉଦ୍ଦୀପନାର ସୁନାର କାଠିର ସ୍ପର୍ଶରେ ପୁରୁଷ ନିତ୍ୟ-ନବୀନଭାବରେ ସଂଜୀବିତ ହୋଇଉଠେ । ସଂସାର ଅତପ-ତାପରେ ଦଗ୍‌ଧ, ଝଡ଼ଝଞ୍ଜା-ବିଧ୍ୱସ୍ତ ଓ ବିପର୍ଯ୍ୟସ୍ତ ପୁରୁଷ ଯେତେବେଳେ ଶ୍ରାନ୍ତ, କ୍ଲାନ୍ତ, ଅବସନ୍ନ ଦେହମନ ନେଇ ଗୃହକୁ ଫେରି ଆସେ, ନାରୀହିଁ ତ ତାର ମମତାମଧୁର ପ୍ରାଣଢଳା ସେବାରେ ଦେହମନ ଶୀତଳ କରେ ; ସୁଖସନ୍ଦୀପୀ ଆଦରରେ, ସୋହାଗରେ, ମଧୁବର୍ଷୀ ପ୍ରେରଣାରେ, ମୃତ୍ୟୁଞ୍ଜୟୀ ଆଶାର



ଅଗ୍ନିମନ୍ତ୍ରରେ ସ୍ତିମିତପ୍ରାଣରେ ନୂତନ ଜୀବନ-ସମ୍ବେଗ ଢାଳିଦିଏ । ସେ ପୁଣି ଊର୍ଜ୍ଜନଦୀପନାରେ ଉତ୍ସୃଜନୀ କର୍ମରେ ପ୍ଳାବନ ପରି ଢଳିପଡ଼େ । ଏହିପରି କରି ତ ନାରୀ ସମସ୍ତଙ୍କ ଅଲକ୍ଷ୍ୟରେ ପ୍ରତିଦିନ ସ୍ୱାମୀ, ପୁତ୍ର, ପିତା ଓ ଭ୍ରାତାର ବ୍ୟଥାଜୀର୍ଣ୍ଣ ଜୀବନରେ ଶକ୍ତି-ସମୃଦ୍ଧ ନବଜୀବନର ଅରୁଣୋଦୟ ଘଟାଏ । ତେଣୁ, ମଙ୍ଗଳମୟୀ ନାରୀର ଅସୀମ ଅବଦାନର କ'ଣ କୌଣସି ପରିମାପ ଚଳେ ?

ଶୁଚିଶୁଦ୍ଧ ସୁକେନ୍ଦ୍ରିକ ପ୍ରୀତି-ସିଦ୍ଧା ତପସ୍ୱିନୀ ସତୀନାରୀ ସର୍ବଂସହା ଧରିତ୍ରୀ ପରି ଅନନ୍ତ ସହ୍ୟ, ଧୈର୍ଯ୍ୟ, ଅଧ୍ୟବସାୟରେ, ପ୍ରତ୍ୟାଶାହୀନ ସେବାରେ ନିୟତ ଆମ୍ଭମାନଙ୍କର ପୋଷଣ, ପାଳନ ଓ ବହନ କରିଚାଲେ, ତେଣୁକରି ଆମେ ତିଷ୍ଠିଥାଉ । ଦଶପ୍ରହରଣଧାରିଣୀ ଦୁର୍ଗା ପରି ପଦେ-ପଦେ ସେମାନେ ଆମ୍ଭମାନଙ୍କର ଦୁର୍ଗତିନାଶକରିବାରେ ନିରତ ରହନ୍ତି, ସେଥିଲାଗି ଆମ୍ଭମାନଙ୍କର ଅସ୍ତିତ୍ୱ ଅକ୍ଷତ ଓ ଅତୁଟ ଥାଏ ।

ଗରୀୟସୀ ମାତୃଜାତି ଏହି ଶାଶ୍ୱତ ଆଦର୍ଶର ଅନୁସରଣ ଦ୍ୱାରା ଯେପରି ନିରନ୍ଧ୍ର ଓ ଅଧିକତର ହୋଇ ଉଠିପାରେ, ସେଥିପାଇଁ ପରମ ପୁରୁଷଙ୍କର ଏହି ଅମୃତ-ଅବଦାନ । ତାଙ୍କର ଇଚ୍ଛା ପୂର୍ଣ୍ଣ ହେଉ— ଘରେ-ଘରେ ପୁରୁଷ ଓ ନାରୀ ଶ୍ରେୟନିଷ୍ଠ, ଆତ୍ମ-ନିବେଦିତ ଜୀବନଯାପନ କରନ୍ତୁ । ପୁଣି ଭାରତ ଦେବ-ଭାରତରେ ପରିଣତ ହେଉ—ସମଗ୍ର ଜଗତକୁ ଅମୃତର ପଥରେ ପରିଚାଳିତ କରୁ । ବନ୍ଦେ ପୁରୁଷୋତ୍ତମମ୍ ।

**ଶ୍ରୀ ଅମରେନ୍ଦ୍ରନାଥ ଚକ୍ରବର୍ତ୍ତୀ**

ସତ୍‌ସଙ୍ଗ, ଦେଓଘର
୧୦ ମାର୍ଗଶୀର, ୧୩୬୯
ଇଂ ୨୬ । ୧୨ । ୧୯୬୨

# ନିବେଦନ

ଯୁଗପୁରୁଷୋତ୍ତମ ପରମପ୍ରେମମୟ ଶ୍ରୀଶ୍ରୀଠାକୁର ଅନୁକୂଳଚନ୍ଦ୍ରଙ୍କ ଶ୍ରୀମୁଖନିଃସୃତ କତିପୟ ଅମୂଲ୍ୟବାଣୀର ଶ୍ରୁତଲିଖନ— ଏହି "ନାରୀର ନୀତି" ଗ୍ରନ୍ଥର ମୂଳ ବଙ୍ଗଳାଭାଷାର ଓଡ଼ିଆ-ଭାଷାନ୍ତର ପରମପୂଜ୍ୟପାଦ ଶ୍ରୀଶ୍ରୀବଡ଼ଦାଙ୍କର ଦୀର୍ଘ ଅଭିଳାଷ । ତାଙ୍କର ଆଦେଶ ଓ ନିର୍ଦ୍ଦେଶକ୍ରମେ ସେହି ମହତୀ ଇଚ୍ଛାକୁ ବାସ୍ତବରୂପ ଦେବାରେ ଯତ୍‌କିଞ୍ଚିତ୍ ପ୍ରୟାସ କରିଥିବାରୁ ମୁଁ ନିଜକୁ କୃତାର୍ଥ ଓ ଧନ୍ୟ ମନେକରୁଛି ।

ଗ୍ରନ୍ଥଟିର ଇତିହାସ, ବିଷୟବସ୍ତୁ ଏବଂ ଉପାଦେୟତା ସମ୍ବନ୍ଧରେ ପ୍ରଧାନ ଆଚାର୍ଯ୍ୟଦେବ ଶ୍ରୀଶ୍ରୀବଡ଼ଦାଙ୍କର ସ୍ୱକୀୟ ଭୂମିକାରେ ସବିସ୍ତାର ବର୍ଣ୍ଣିତ— ସେ ସମ୍ପର୍କରେ ଅଧିକ କିଛି ଲେଖିବା ନିଷ୍ପ୍ରୟୋଜନ ମନେକରେ ।

ଅନୁବାଦଗତ ଯାବତୀୟ ତ୍ରୁଟି ମୋର ନିଜର । ସହୃଦୟ ପାଠକ ପାଠିକା ଏ ଦିଗରେ ଦୃଷ୍ଟି ଆକର୍ଷଣ କଲେ ମୁଁ ଚିରକୃତଜ୍ଞ ହେବି ।

ସର୍ବୋପରି ଓଡ଼ିଆ ଭାଷାଭାଷୀ ମା ଓ ଭାଇମାନେ ଶ୍ରଦ୍ଧା ଓ ଭକ୍ତି ସହକାରେ ଏହି ଗ୍ରନ୍ଥଟିର ପଠନ, ମନନ ଓ ଅନୁଶୀଳନରେ ଆଗ୍ରହୀ ହେଲେ ଅଧମର ଶ୍ରମ ସାର୍ଥକ ହେବ । ବନ୍ଦେ ପୁରୁଷୋତ୍ତମମ୍ ।

ଅନୁବାଦକ
ଶ୍ରୀ ଯତୀନ୍ଦ୍ର ମୋହନ ବସୁ
ସହ-ସମ୍ପାଦକ, ସତ୍‌ସଙ୍ଗ

ସତ୍‌ସଙ୍ଗ, ଦେଓଘର
୧୩ ଜ୍ୟେଷ୍ଠ, ୧୩୮୪

# ସୂଚୀପତ୍ର

ସତ୍ତା ସଚ୍ଚିଦାନନ୍ଦମୟ,—
ଅସତ୍ ନିରୋଧୀ ସ୍ୱତଃହିଁ,
ସଚ୍ଚିଦାନନ୍ଦର ପରିପୋଷାକ ଯା' ତା'ହିଁ ଧର୍ମ,
ଧର୍ମ ମୂର୍ତ୍ତ ହୁଏ ଆଦର୍ଶରେ—
ଆଦର୍ଶରେ ଦୀକ୍ଷା ଆଣେ ଅନୁରାଗ,
ଅନୁରାଗ ଆଣେ ବୃତ୍ତି—ନିୟନ୍ତ୍ରଣ,
ବୃତ୍ତି-ନିୟନ୍ତ୍ରଣ ଆଣେ ଧୃତି,
ଧୃତି ଆଣେ ସହାନୁଭୂତି,
ସହାନୁଭୂତି ଆଣେ ସଂହତି,
ସଂହତି ଆଣେ ଶକ୍ତି,
ଶକ୍ତି ଆଣେ ସମ୍ବର୍ଦ୍ଧନା;
ଆଉ, ଏହି ଧୃତି ଆଣେ ପ୍ରଣିଧାନ,
ପ୍ରଣିଧାନରୁହିଁ ଆସେ ସମାଧି,
ପୁଣି ସମାଧିରୁହିଁ ଆସେ କୈବଲ୍ୟ—
ତୃଷ୍ଣାର ଏକାନ୍ତ ନିର୍ବାଣ—
ମହାଚେତନ ସମୁତ୍‌ଥାନ !

আমার কথাগুলি যদি তোমায়-
শুধু কথা-ভিতরের খোরাক মাত্র হয় -
কবির যা আবরণের ভেতর দিয়ে
পৌঁছালে যদি.
বাস্তবেই ফুটিয়ে তুলতে না পায়.
তবে -
পাওয়া যে তোমার
উম পাঞ্জুরই রয়ে যাবে -
তা কিন্তু অতি নিশ্চয় -
তোমারই "আমি"

ମୋର କଥାଗୁଡ଼ିକ ଯଦି ତୁମର
କେବଳ କଥା ଓ ଚିନ୍ତାର ଖୋରାକ
ମାତ୍ର ହୁଏ–
କରିବା ବା ଆଚରଣର ଭିତର ଦେଇ
ସେଗୁଡ଼ିକୁ ଯଦି ବାସ୍ତବରେ
ଫୁଟେଇ ତୋଳି ନ ପାର
ତେବେ ପାଇବା ଯେ ତୁମର
ତମସାଚ୍ଛନ୍ନ ରହିଯିବ
ତା' କିନ୍ତୁ ଅତି ନିଶ୍ଚୟ
ତୁମର "ମୁଁ"

–(ଶ୍ରୀଶ୍ରୀ ଠାକୁରଙ୍କ ଶ୍ରୀହସ୍ତ ଲିଖିତ ମୂଳ
ବଂଗଳାର ଓଡ଼ିଆ ଅନୁବାଦ) ।



## ଝିଅ ମୋର,

ତୁମର ସେବା, ତୁମର ଚାଲିବା,
ତୁମର ଚିନ୍ତା, ତୁମର କହିବା
ପୁରୁଷ-ଜନସାଧାରଣଙ୍କ ଭିତରେ
ଯେପରି ଏପରି ଗୋଟାଏ ଭାବର ସୃଷ୍ଟି କରେ—
ଯେଉଁଥିରେ ସେମାନେ
ଅବନତମସ୍ତକରେ, ନତଜାନୁ ହୋଇ
ସସମ୍ଭ୍ରମେ
ଭକ୍ତିଗଦଗଦ କଣ୍ଠରେ,—
'ମା ମୋର,— ଜନନୀ ମୋର !' କହି
ମୁଗ୍ଧ ହୁଅନ୍ତି, ବୁଦ୍ଧ ହୁଅନ୍ତି, ତୃପ୍ତ ହୁଅନ୍ତି,
କୃତାର୍ଥ ହୁଅନ୍ତି,—
ତେବେହିଁ ତୁମେ ନାରୀ,
—ତେବେହିଁ ତୁମେ ସତୀ !

## ମା ପରି

ତୁମେ ମଣିଷର
ମା ପରି ଆପଣାର ହେବାକୁ
ଚେଷ୍ଟା କର,—
ତାହା କଥାରେ, ସେବାରେ ଓ ଭରସାରେ,
କିନ୍ତୁ ମିଶିବାରେ ନୁହେଁ ;
ଦେଖିବ—
କେତେହିଁ ତୁମର-ହୋଇ ଯାଉଛି

## ସେବା ଓ ସେବାର ଅପଳାପ

'ସେବା' ମାନେ ତାହାହିଁ
ଯାହା ମଣିଷକୁ
ସୁସ୍ଥ, ସ୍ୱସ୍ଥ, ଉନ୍ନତ ଓ ଆନନ୍ଦିତ କରିତୋଳେ ;
ଆଉ, ତା' ହୁଏ ନାହିଁ
ଅଥଚ ଶୁଶ୍ରୂଷା ଅଛି—
ସେ-ସେବା ଅପଳାପକୁହିଁ ଆବାହନ କରେ । ୨ ।

## କ୍ଷିପ୍ରତା ଓ ଦକ୍ଷତା

କ୍ଷିପ୍ରତା ସହିତ ଦକ୍ଷତାକୁ ସାଧି ନିଅ,
ଆଉ, ନଜର ରଖ—
ମଣିଷର ପ୍ରୟୋଜନାନୁରୂପ ହାବଭାବ ଉପରେ,
ଆଉ, ହାବଭାବ ଦେଖିହିଁ ଯେପରି
ପ୍ରୟୋଜନକୁ ଅନୁଧାବନ କରିପାର—
ତୁମର ବୋଧକୁ ସେପରିଭାବେ ତୀକ୍ଷ୍ଣ କରି ନେବାକୁ
ଚେଷ୍ଟା କର ;
ଏପରି କରିହିଁ—
କ୍ଷିପ୍ରତା ଓ ଦକ୍ଷତାର ସହିତ—
ମଣିଷର ପ୍ରୟୋଜନକୁ ଅନୁଧାବନ କରି
ସେବା-ତତ୍ପର ହୁଅ,—
ଦେଖିବ—
ସେବାର ଜୟଗାନ
ତୁମକୁ ପରିପ୍ଲୁତ କରି ତୋଳିବ । ୩ ।



## ସୁଖ ଓ ଭୋଗ

'ସୁଖ' ମାନେ ତାହାହିଁ
ଯାହା being ଟାକୁ (ସତ୍ତା ବା ଜୀବନଟାକୁ)
ସୁସ୍ଥ, ସଜୀବ ଓ ଉନ୍ନତ କରି
ପାରିପାର୍ଶ୍ୱିକକୁ
ସେପରିଭାବରେ ଗଢ଼ିତୋଳେ,—
ଆଉ
ପ୍ରକୃତ ଭୋଗ
ସେତେବେଳେହିଁ ସେଠାରେ ତାହାକୁ
ଅଭିନନ୍ଦିତ କରେ । ୪ ।

## ନାରୀର ବୈଶିଷ୍ଟ୍ୟ

ସ୍ତ୍ରୀ-ମାନଙ୍କର ବୈଶିଷ୍ଟ୍ୟରେ ଅଛି—
ନିଷ୍ଠା, ଧର୍ମ, ଶୁଶ୍ରୂଷା, ସେବା, ସାହାଯ୍ୟ,
ସଂରକ୍ଷଣ, ପ୍ରେରଣା ଓ ପ୍ରଜନନ ;
ତୁମେ ତୁମ୍ଭମାନଙ୍କର ସେହି ବୈଶିଷ୍ଟ୍ୟର
କିଛି ମାତ୍ର
ତ୍ୟାଗ କର ନାହିଁ ;
ଏହା ହରେଇଲେ
ତୁମମାନଙ୍କର
ଆଉ କ'ଣ ରହିଲା ? । ୫ ।

## କୁମାରୀତ୍ୱରେ

କୁମାରୀ ଝିଅମାନଙ୍କର—
ପିତାଙ୍କ ପ୍ରତି ଅନୁରକ୍ତି ଥିବା,
ତାଙ୍କର ସେବା ଓ ସାହଚର୍ଯ୍ୟ କରିବା,—
ତାଙ୍କ ସହିତ
ଆଳାପ ଓ ଆଲୋଚନା କରିବା—
ଉନ୍ନତିର
ପ୍ରଥମ ଓ ପୁଷ୍ଟ ସୋପାନ ।୬।

## ଧର୍ମକାର୍ଯ୍ୟ

ଧର୍ମକାର୍ଯ୍ୟ ମାନେ ତାହାହିଁ କରିବା—
ଯେଉଁଥିରେ
ତୁମର ଓ ତୁମର ପାରିପାର୍ଶ୍ୱିକର
ଜୀବନ, ଯଶ ଓ ବୃଦ୍ଧି
କ୍ରମବର୍ଦ୍ଧନରେ ବର୍ଦ୍ଧିତ ହୁଏ ;—
ଭାବି, ବୁଝି, ଦେଖି, ଶୁଣି—
ତାହାହିଁ କୁହ,—
ଆଉ, ଆଚରଣରେ
ତାହାହିଁ ଅନୁଷ୍ଠାନ କର,—
ଦେଖିବ—
ଭୟ ଓ ଅଶୁଭଠାରୁ
କେତେଦୂର ତ୍ରାଣ ପାଅ ।୭।



## ନାରୀତ୍ୱର ଅପଳାପ

ମନେ ରଖ—
ତୁମର ସଂସର୍ଗ ଯଦି
ସର୍ବବିଷୟରେ
ଯଥାଯଥ ଭାବରେ
ଉନ୍ନତି ବା ବୃଦ୍ଧି ଦିଗକୁ
ଚାଳିତ ନ କଲା—
ତୁମର ନାରୀତ୍ୱ କ'ଣ
ମସୀଲିପ୍ତ ହେଲା ନାହିଁ ? ।୮।

## ଦାନ ଓ ପ୍ରାପ୍ତି

ତୁମର ଭାବ, ଭାଷା ଓ କର୍ମକୁଶଳତା ଯେପରି,
ତୁମ ସଂସର୍ଗରେ ଯାହାହିଁ ଆସିବ
ତାହାହିଁ
ସେପରି ଭାବରେ
ଉଦ୍ଦୀପ୍ତ ହେବ,
ଆଉ, ତୁମେ ପାଇବ ମଧ୍ୟ ତାହାହିଁ—
ସେପରି ଭାବରେ ;
ତୁମେ ନାରୀ,
ପ୍ରକୃତିହିଁ ତୁମକୁ
ଏପରି ଭାବରେ ଗୁଣମୟୀ କରି
ପ୍ରସବ କରିଛନ୍ତି—
ବୁଝି ଚାଲ ! ।୯।

# ଭାବ, ଭାଷା ଓ କର୍ମ

ଭାବ
ଭାଷାକୁ ମୁଖର କରିତୋଳେ—
ପୁଣି, ଭାବହିଁ
କର୍ମକୁ ନିୟନ୍ତ୍ରିତ କରେ,
ଆଉ, ଭାବନାରୁହିଁ ଭାବ ଉଦିତ ହୁଏ ;
ଅତଏବ
ତୁମର ଭାବନାକୁ
ଯେତେ ସୁନ୍ଦର, ସୁଶୃଙ୍ଖଳ, ସହଜ, ଅବିରୋଧ
—ଓ ଉନ୍ନତ-ଧରଣର କରିବ—
ତୁମର ଭାଷା, ବ୍ୟବହାର ଓ କର୍ମକୁଶଳତା ମଧ୍ୟ
ସେହିପରି
ସୁନ୍ଦର, ଅବିରୋଧ ଓ ଉନ୍ନତ-ଧରଣର ହେବ ।୧୦।

# ଚାହିବାର ବିଳାସିତା

ଯେତେବେଳେ ଦେଖିବ—
ତୁମର
ବାକ୍, ବ୍ୟବହାର, ଚଳନ, ଚରିତ୍ର ଓ ଲାଗି-ରହିବା
ତୁମର ଚାହିଦାକୁ
ଯେପରି କଲେ ତା ପାଇପାର—
ସହଜଭାବରେ ତାର ଅନୁସରଣ କରୁନାହିଁ,—
ନିଶ୍ଚୟ ଜାଣ—
ତୁମର ଚାହିବା ଖାଣ୍ଟି ନୁହେଁ—
ଚାହିବାର ବିଳାସିତା ମାତ୍ର ।୧୧।



# ପରିଜନରେ ବ୍ୟାପ୍ତି

ଯଦି ଯଶସ୍ୱିନୀ ହେବାକୁ ଚାହ—
ତୁମର ନିଜସ୍ୱ ଓ ବୈଶିଷ୍ଟ୍ୟରେ ଅଟୁଟ ରହି
ପାରିପାର୍ଶ୍ୱିକର ଜୀବନ ଓ ବୃଦ୍ଧିକୁ
ତୁମର ସେବା ଓ ସାହଚର୍ଯ୍ୟ ଦେଇ
ଉନ୍ନତି ଦିଗରେ
ମୁକ୍ତ କରିତୋଳ,
ତୁମେ ପ୍ରତ୍ୟେକଙ୍କର ପୂଜନୀୟା ଓ ନିତ୍ୟପ୍ରୟୋଜନୀୟା ହୋଇ
ପରିଜନରେ ବ୍ୟାପ୍ତ ହୁଅ—
ଆଉ, ଏହି ଗୁଡ଼ିକହିଁ ତୁମର
ସ୍ୱାଭାବିକ
ବା
ଚରିତ୍ରଗତ ହେଉ ! ।୧୨।

# ସନ୍ତୋଷରେ ସୁଖ

ନିଜର ପ୍ରୟୋଜନକୁ ନ ବଢ଼ାଇ
ମାନ-ଯଶର ଆକାଙ୍କ୍ଷା ନ କରି
ସେବା-ତତ୍ପର ରହି
ସର୍ବଦା ସନ୍ତୁଷ୍ଟ ରହିବାକୁ
ଚରିତ୍ରଗତ କରିନିଅ ;—
ସୁଖ ତୁମକୁ
କୌଣସିମତେ ତ୍ୟାଗ କରିବ ନାହିଁ । ।୧୩।

# ମହତ୍-ଗୁଣର କେତୋଟି

ଆଦର୍ଶରେ ଅନୁପ୍ରାଣତା,
ସେବାରେ ଦକ୍ଷତା,
କାର୍ଯ୍ୟରେ ନିପୁଣତା,
କଥାରେ ମିଷ୍ଟତା ଓ ସହାନୁଭୂତି,
ବ୍ୟବହାରରେ ସମ୍ବର୍ଦ୍ଧନା—
ଏଗୁଡ଼ିକ ମହତ୍ ଗୁଣ । ।୧୪।

# ସ୍ୱମତ-ପ୍ରକାଶରେ

ଯେ-ନାରୀ
ମଥାନତ କରି
ସମ୍ମାନର ସହିତ
ନିଜର ମତକୁ ପ୍ରକାଶ କରେ—
ଏବଂ
ତତ୍-ସମ୍ପର୍କରେ
କାହାରିକୁ ହୀନ କରେ ନାହିଁ,—
ସେ—
ସହଜରେହିଁ ଆଦରଣୀୟା ଓ ପୂଜନୀୟା ହୁଏ । ।୧୫।



# ଶିକ୍ଷାର ଧାରା

ନାରୀମାନଙ୍କୁ
ଶିକ୍ଷିତ କରିବାକୁ ହେଲେ
ଶିକ୍ଷାର ଧାରା
ଏପରିଭାବେ ହେବା ପ୍ରୟୋଜନ—
ଯେଉଁଥିରେ
ସେମାନେ ବୈଶିଷ୍ଟ୍ୟରେ ବର୍ଦ୍ଧନଶୀଳ,
ଉନ୍ନତିପ୍ରବଣ
ଓ ଅବ୍ୟାହତ ହୁଅନ୍ତି ;—
ତେବେଯାଇ—
ସେ ଶିକ୍ଷା
ଜୀବନ ଓ ସମାଜକୁ
ଧାରଣ, ରକ୍ଷଣ ଓ ଉନ୍ନୟନରେ
ସାର୍ଥକ କରିପାରେ । ।୧୬।

# ବୈଶିଷ୍ଟ୍ୟୋଲ୍ଲଘଂନୀ ଶିକ୍ଷା

ବୈଶିଷ୍ଟ୍ୟକୁ ଉଲ୍ଲଘଂନ କରି
ଶିକ୍ଷାର ଅବତାରଣା କରିବା—
ଆଉ,
ଜୀବନକୁ
ନପୁଂସକ କରି ଦେବା—
ଏକା କଥା । ।୧୭।

## ଶିକ୍ଷାରେ ଭକ୍ତି ଓ ଈର୍ଷ୍ୟା

ପ୍ରେମ ବା
ଭକ୍ତିରୁ ଉଦ୍‌ଭୂତ ଯେ-ଶିକ୍ଷା—
ତାହାହିଁ
ଜୀବନ ଓ ଚରିତ୍ରକୁ ରଞ୍ଜିତ କରିପାରେ ;
ଆଉ,
ପରଶ୍ରୀକାତରତା,
ଈର୍ଷ୍ୟା ଓ ହୀନବୋଧରୁ
ଯାହାର ଉଦ୍ଭବ—
ତାହା ମସ୍ତିଷ୍କରେ
କଳଗାଉଣା ରେକର୍ଡ ପରି
ସ୍ମୃତିର ଦାଗ ହିଁ
ସୃଷ୍ଟି କରିପାରେ ;
କିନ୍ତୁ ଜୀବନ ଓ ଚରିତ୍ରକୁ
ଅଳ୍ପହିଁ ସ୍ପର୍ଶ କରେ । ।୧୮।

## ଲଜ୍ଜା ଓ ସଙ୍କୋଚ

ଲଜ୍ଜା ଯେଉଁଠି
ପୁରୁଷର ମୋହକୁ ଡାକି ଆଣେ—
ତା' ଲଜ୍ଜା ନୁହେଁ—
ଦୁର୍ବଳତା ବା ଅଜ୍ଞତାର ଛଳନା !
ନାରୀର ଲଜ୍ଜା ଯଦି
ପୁରୁଷକୁ
ସଶ୍ରଦ୍ଧ, ଅବନତ ଓ ସେବା-ଉନ୍ମୁଖ କରିତୋଳେ,



ସେହି ଲଜ୍ଜାହିଁ ନାରୀର ଅଳଙ୍କାର ;—
ଲଜ୍ଜାକୁ ଭୁଲ କରି
ତାହା ନାମରେ
ଦୁର୍ବଳତାକୁ
ଡାକି ଆଣ ନାହିଁ । ।୧୯।

## ସ୍ୱଧର୍ମ—ଲାଞ୍ଛନା

ଯେତେବେଳେ ପୁରୁଷ
ନାରୀପ୍ରତି ଉନ୍ମୁଖ ହୋଇ—
ଯହା-ଯାହା ନେଇ ନାରୀ
ତାହା ଗୋଟେଇ ନେଇ—
ନିଜକୁ ସଜାଇବାକୁ ଚାହେ,—
ଆଉ,
ନାରୀ ଯେତେବେଳେ
ପୁରୁଷତ୍ୱର ଦାବୀ କରି
ତାହାର ବୈଶିଷ୍ଟ୍ୟକୁ ତାଚ୍ଛିଲ୍ୟ କରେ
ଓ ପୁରୁଷର ହାବଭାବର ଅନୁକରଣ କରି
ତାହାର ଦାବୀ କରେ,—
ମୃତ୍ୟୁ—
ସେତେବେଳେ ତାହାର ଜାତୀୟ ଆନ୍ଦୋଳନରେ
ଉଦ୍ଦାମ ହୋଇଉଠେ ;—
ତୁମେ ତୁମର ଭଗବାନ୍-ଦତ୍ତ ଆଶୀର୍ବାଦ—
ବୈଶିଷ୍ଟ୍ୟକୁ
ହତଶ୍ରଦ୍ଧାରେ ଲାଞ୍ଛିତ କରନାହିଁ—

ମୃତ୍ୟୁର ଉଦ୍ଦାମ ଆନ୍ଦୋଳନକୁ
ପ୍ରଶ୍ରୟ ଦିଅନାହିଁ—
ସାଧ୍ୟ କ'ଣ—
ସେ ତୁମକୁ ଅବନତ କରିବ ? ।୨୦।

## ସେବାରେ ଶଇତାନର ହାତଠାର

ଯେ-ସେବା
ତୁମର ଆଦର୍ଶକୁ
ଅତିକ୍ରମ କରେ
କିନ୍ତୁ ପ୍ରତିଷ୍ଠା କରେ ନାହିଁ,—
ତାହା
ଶଇତାନର ହାତଠାର,
ଲୁବ୍ଧ ହୋଇ—
ତମସାକୁ
ଆଲିଙ୍ଗନ କର ନାହିଁ। ।୨୧।

## ପ୍ରକୃତ ଅବରୋଧ ଓ ଅବଗୁଣ୍ଠନ

ଦୁଃଶୀଳତାର
ଅବରୋଧ ଓ ଅବଗୁଣ୍ଠନ
ମଣିଷର—
ବିଶେଷତଃ ନାରୀର
ପ୍ରକୃତ
ଅବରୋଧ ଓ ଅବଗୁଣ୍ଠନ। ।୨୨।



## ଏକାନୁରକ୍ତି ଓ ବହୁ—ଅନୁରକ୍ତି

ଏକାନୁରକ୍ତି
ବୃତ୍ତିଗୁଡ଼ିକୁ
ନିରୋଧ କରି,
ଭାଙ୍ଗି—
ଜ୍ଞାନରେ ବିନ୍ୟସ୍ତ କରିଦିଏ,—
ଆଉ,
ବହୁ-ଅନୁରକ୍ତି—
ବୃତ୍ତିଗୁଡ଼ିକୁ
ଅଧିକରୁ ଅଧିକତର କରି,—
ବିବେକ ଓ ବିବେଚନା-ଶୂନ୍ୟ
କରିପକାଏ ;—
ତେଣୁ,
ବହୁରେ ଆସକ୍ତି—
ମୂଢ଼ତ୍ୱ ଓ ମରଣର ପଥ
ପରିଷ୍କାର କରେ,
ଆଉ, ଏକାନୁରକ୍ତି
ଅମୃତକୁ ନିମନ୍ତ୍ରଣ କରେ ।୨୩।

## ବହିରିଙ୍ଗିତରେ ଚରିତ୍ରାନୁସନ୍ଧାନ

ତୁମର ଚାହାଣି, ଚାଲି, ହସ, କଥା,
ଆଚାର, ବ୍ୟବହାରକୁ
ଏପରିଭାବେ ଚରିତ୍ରଗତ କରିବାକୁ ଚେଷ୍ଟା କର—
ଯେଉଁଥିରେ ତାହା ସାଧାରଣତଃ

ପ୍ରତ୍ୟେକ ପୁରୁଷର
ଭକ୍ତି, ସମ୍ଭ୍ରମ, ଶ୍ରଦ୍ଧା ଆକର୍ଷଣ କରେ ;—
ତେଣୁ,
ଯେତେବେଳେ ଦେଖିବ
କୌଣସି ପୁରୁଷ
ତୁମପ୍ରତି
କାମଲୋଲୁପ ଇଙ୍ଗିତ କରୁଛି,
ତତ୍‌କ୍ଷଣାତ୍ ତୁମର ଚରିତ୍ରକୁ
ତନ୍ନ-ତନ୍ନ କରି ଖୋଜି ଦେଖ
ଭୁଲ କେଉଁଠି—
ଆଉ, କାହିଁକି ଏପରି ହେଉଛି ;—
ଯଦିବା ଦୁର୍ବଳଚିତ୍ତ ପୁରୁଷହିଁ ଏହିପରି କରିଥାଏ,
ତଥାପି
ତୁମପ୍ରତି ଭୟ ଓ ସମ୍ଭ୍ରମହିଁ
ଏହାର ଉତ୍ତମ ପ୍ରତିଷେଧକ ।୨୪।

## ଉତ୍ସବ—ଭ୍ରମଣାଦିରେ ପୁରୁଷ—ସାହଚର୍ଯ୍ୟ

ପିତା କିମ୍ବା ପିତୃସ୍ଥାନୀୟ ଗୁରୁଜନ,
ଉପଯୁକ୍ତ ସାନ କିମ୍ବା ବଡ଼ଭାଇ ସହିତ
କ୍ରୀଡ଼ା-କୌତୁକ, ଗାୟନ-ବାଦନ, ଉତ୍ସବ-ଭ୍ରମଣ
କରିବାହିଁ ଶ୍ରେୟ—
ଏଥିରେ କୁମାରୀମାନଙ୍କର
ବିପଦ୍‌ପାତର
ସମ୍ଭାବନା କମ୍‌ହିଁ ଘଟିଥାଏ—
ତୁମେ ପାରତ ଏପରିଭାବରେ ଚାଲ ;—



ଯେତେକ୍ଷଣ ପର୍ଯ୍ୟନ୍ତ
ଏପରି ସାମର୍ଥ୍ୟ ଅନୁଭବ ନ କର—
ଯେଉଁଥିରେ ପୁରୁଷମାତ୍ରେହିଁ
ତୁମ ନିକଟରେ
ସମ୍ଭ୍ରମରେ ଅବନତ ହୁଅନ୍ତି ।୨୫।

## ସାଜସଜ୍ଜାର ପ୍ରୟୋଜନ ଓ ବାହୁଲ୍ୟ

ନାରୀର ସାଜସଜ୍ଜା
ପରିଧାନ-ପରିଚ୍ଛଦ,
ଚଳନ-ଚରିତ୍ର
ଏପରିଭାବେ ହେବା ଉଚିତ—
ଯାହା
ପୁରୁଷ ମନରେ
ଗୋଟାଏ
ଉନ୍ନତ, ପବିତ୍ର, ସଭାବର ସୃଷ୍ଟି କରେ ;
ଆଉ, ଏହା ସୁପ୍ରଜନନ ଓ
ମଣିଷକୁ ଶ୍ରଦ୍ଧୋଦ୍ଦୀପ୍ତ କରିବାର ମଧ୍ୟ
ଗୋଟିଏ ଉତ୍ତମ ଉପକରଣ ;—
ଏହାର ବହୁଳତା
ବାହୁଲ୍ୟକୁହିଁ ଡାକି ଆଣିବ—
ସାବଧାନ ହୁଅ ।୨୬।

## ଗୁପ୍ତ ପୁରୁଷାକାଙ୍କ୍ଷା

ଯେତେବେଳେହିଁ ଦେଖିବ
ପୁରୁଷ-ସଂସ୍ରବ
ତୁମର ଭଲ ଲାଗୁଛି—

ଅଜ୍ଞାତସାରରେ କେମିତି କରି,
ପୁରୁଷଙ୍କ ଭିତରକୁ ଯାଇ,
ଆଳାପ-ଆଲୋଚନାରେ ପ୍ରବୃତ୍ତ ହେଉଛ—
ବୁଝ—
ପୁରୁଷାକାଙ୍କ୍ଷା
ଜ୍ଞାତସାରରେହିଁ ହେଉ ଆଉ ଅଜ୍ଞାତସାରରେହିଁ ହେଉ
ତୁମ ଭିତରେ ମୁଣ୍ଡଟେକି ଉଠୁଛି ;—
ଯଦିବା
ସ୍ତ୍ରୀ-ପୁରୁଷ ଉଭୟଙ୍କର ପ୍ରକୃତିଗତ ଗୋଟାଏ ଝୁଙ୍କ
ଉଭୟଙ୍କର ସଂସ୍ରବରେ ଆସିବା—
ତଥାପି ଦୂରରେ ରୁହ,
ନିଜକୁ ସମ୍ଭାଳ—
ନତୁବା
ଅମର୍ଯ୍ୟାଦାର
ତୁମକୁ କଳଙ୍କିତ କରିବାକୁ
କିଛି ବି ଅସୁବିଧା ହେବନି ।୨୬।

## ଈର୍ଷ୍ୟା ଓ ଦୋଷ ଦୃଷ୍ଟିରେ

ଈର୍ଷ୍ୟା, ଅସହାନୁଭୂତି ଓ ଦୋଷ ଦୃଷ୍ଟିର
ଗୋଟାଏ ପ୍ରଧାନ କାରଣହିଁ ହେଉଛି—
ଜଣକୁ ଯାହା ଭଲ ଲାଗେ,
ଅନ୍ୟକୁ ତାହା ଭଲ ନ ଲାଗି
ଅହଂକୁ ଆହତ, ଉଦ୍‌ବିଗ୍ନ, ଅବସନ୍ନ କରିତୋଳେ
—ଆଉ ଏହା ଉଭୟତଃ ;—
ତାହା ଫଳରେ
ଅପବାଦ ଓ ଈର୍ଷ୍ୟାରେ



ଅପ୍ରତିଷ୍ଠା ଆସି
ଉଭୟଙ୍କରହିଁ ଅପଳାପ ଆଣିବାକୁ ଚାହେ;
ତୁମେ କିନ୍ତୁ
ଅନ୍ୟର ଭଲ-ଲାଗିବାରେ ଆନନ୍ଦିତ ହୁଅ ;—
ସହାନୁଭୂତି ଦେଖାଅ—
ଯଦି ତା' ତୁମର କ୍ଷତି ବି ଆଣିଥାଏ,
ତାହାର ଅବସ୍ଥା, ପ୍ରୟୋଜନ ଓ ବୋଧ ଆଡ଼କୁ
ନଜର ରଖି —
ସେଠାରେ ତୁମର ଏପରି ହେଲେ
ତୁମେବି ତାହାହିଁ କରିଥାଆନ୍ତ,
ବୋଧ କରି
ତାହାର ନିନ୍ଦା ବା ଅଖ୍ୟାତି କର ନାହିଁ—
ଆଉ, ଏହା ତୁମେ
ଚରିତ୍ରଗତ କରି ପକାଇବାକୁ ଚେଷ୍ଟା କର ;
ଦେଖିବ—
ପ୍ରତିଷ୍ଠା ଲାଭ କରିବ,
ସ୍ୱସ୍ତି ତୁମକୁ ଅଭ୍ୟର୍ଥନା କରିବ । ।୨୮।

## ଅଭିମାନରେ

ଅଭିମାନ କରିବା
ଝିଅମାନଙ୍କର ଗୋଟାଏ ବିଷମ ଦୁର୍ବଳତା ;—
ମଣିଷର ଚାହିଦା ଯେତେବେଳେ ବ୍ୟାହତ ହୁଏ,
ଅହଂ ସେତେବେଳେ
ନୀଚ ହୋଇ,
ହୀନତା ଅବଲମ୍ବନ କରି,

ଅବଶୋଷରେ ମଥା ଗୁଞ୍ଜା ଦିଏ ;—

ଆଉ,
ଅଭିମାନ ହେଉଛି
ଏହି ଅଂହରହିଁ
ଏକରକମ ଅଭିବ୍ୟକ୍ତି ;

ତେଣୁ,
ଅଭିମାନର ସହଜ ସହଚରହିଁ ହେଉଛି
ଈର୍ଷ୍ୟା, ଆକ୍ରୋଶ ଓ ଅନ୍ୟାଯ୍ୟ-ଦୁଃଖର ପ୍ରଳାପ,
ଅଳ୍ପ କାରଣକୁ
ବେଶି-କରି ବୋଧ କରି—
ସେଥିରେ ମୁହ୍ୟମାନ ହେବା,
ରୋଗେଚ୍ଛା (will to illness),
ଅପରିଚ୍ଛନ୍ନ ଓ କୁତ୍ସିତ ରହିବାର ଚିନ୍ତା
(will to ugliness),
ସାବଧାନ ହୁଅ—
ଏହା ତୁମକୁ ନର୍କକୁ ନେବାର ପ୍ରକୃତ ବନ୍ଧୁ ।୨୯।

## ପ୍ରତିଷ୍ଠାରେ ପ୍ରେମ

ପ୍ରେମ ବା ଭଲପାଇବା—
ତାହାର ପ୍ରେମାସ୍ପଦଙ୍କୁ
ପାରିପାର୍ଶ୍ୱିକରେ, ଜଗତରେ
କେବଳ ପ୍ରତିଷ୍ଠା କରିହିଁ କ୍ଷାନ୍ତ ହୁଏ ନାହିଁ,—
ସେ ଆହୁରି ଚାହେ—ତାହାର ଜଗତକୁ
ବ୍ୟଷ୍ଟି ଓ ସମଷ୍ଟିଭାବେ
ତାହାର ପ୍ରେମାସ୍ପଦଙ୍କୁ
ଉପଢୌକନ ଦେଇ କୃତାର୍ଥ ହେବାକୁ ;—



ତାହାଙ୍କୁ ବହନ କରି,
ବୃଦ୍ଧିରେ ଅନୁପ୍ରାଣିତ କରି—
ଅଧୀନତାରେ
ତୃପ୍ତି ଓ ମୁକ୍ତିକୁ ଆଲିଙ୍ଗନ କରିବାକୁ ;—
ଆଉ, ଏପରି କରି
ପ୍ରେମ ତାହାର ପ୍ରିୟଙ୍କୁ
ବୋଧରେ, ଜ୍ଞାନରେ, କର୍ମରେ, ଜୀବନରେ ଓ ଐଶ୍ୱର୍ଯ୍ୟରେ
ପ୍ରତୁଳ କରିତୋଳେ—
ତେଣୁ,
ପ୍ରେମ ଏତେ ନିଷ୍ପାପ
—ଏତେ ବରଣୀୟ । ।୩୦।

## କାମରେ କାମ୍ୟ

କାମ ଚାହେ
ତାହାର କାମ୍ୟକୁ
ନିଜପରି କରି ନେବାକୁ—
ସେ ସୁଖୀ ହୁଏ
କାମ୍ୟ ଯଦି ତାହାର ଜଗତଟିକୁ ନେଇ
ତା'ଠାରେ ନିମଜ୍ଜିତ କରିଦିଏ ;
କାମ
କାହାରି ଆଡ଼କୁ ଛୁଟିବାକୁ ଜାଣେନା—
ତାହାର ଶିକାରକୁ
ଆତ୍ମସାତ୍ କରିହିଁ ତାହାର ତୃପ୍ତି,—
ସେଥିପାଇଁ ତାହାର ବୃଦ୍ଧି ନାହିଁ—
ଜୀବନ ଓ ଯଶ
ସଙ୍କୋଚଶୀଳ—

ମରଣ-ପ୍ରାସାଦରେ ତାହାର ସ୍ଥିତି,—
ତେଣୁ, ତାହା
ପାପ, ଦୁର୍ବଳତା, ଚଞ୍ଚଳ, ଅସ୍ଥାୟୀ
ଓ ମରଣ-ପ୍ରହେଳିକାମୟ !
—ବୁଝି ଦେଖ
କ'ଣ ଚାହ ? ।୩୧।

## ଦୁଃଖର ପ୍ରଳାପରେ

ନିୟତ ଦୋଷ ଦୁଃଖର କଥା
ମଣିଷକୁ
ସହାନୁଭୂତିଶୂନ୍ୟ କରିତୋଳେ—
କାରଣ,
ମଣିଷ ତୁମ ଠାରୁ
ଦୋଷ ବା ଦୁଃଖ ଚାହେ ନା !
ଚାହେ ଜୀବନ, ଆନନ୍ଦ, ଯଶ ଓ ବୃଦ୍ଧି ;—
ତାହା ଯଦି ନ ପାଏ,
ତୁମର ଆପଣାର ବୋଲି କେହି
ରହିବେ ନାହିଁ—
ଦୂରେଇଯିବେ,—
ଲିଭିଯିବେ,—
ଦେଖିବ ।୩୨।

## ସନ୍ଦେହଯୋଗ୍ୟ ପ୍ରେମ

ପ୍ରେମ ଯଦି
ପ୍ରେମାସ୍ପଦଙ୍କୁ
ପ୍ରତିଷ୍ଠା ଓ ଯାଜନ



ନ କରେ,
ସେ-ପ୍ରେମକୁ
ସନ୍ଦେହ କରିପାର—
ନଜର ରଖ ।୩୩।

## ନିଦ୍ରାରେ

ଚେତନ ରହିବା
ଭଗବାନଙ୍କର ଆଶୀର୍ବାଦ,—
ଆଉ,
ଏହି ଚେତନାହିଁ ଜୀବନ ;—
ତୁମେ ବୃଥା ନିଦ୍ରାକୁ
ସାଧି ଆଣ ନା,—
ସେତେଟିକିଏ ଶୁଅ—
ଯାହା ଫଳରେ
ଆହୁରି
ଉଦ୍ଦୀପ୍ତ ହୋଇ ଉଠିପାର ।୩୪।

## ସେବାରେ ଲକ୍ଷ୍ମୀ

'ଲକ୍ଷ୍ମୀ' ମାନେ ଶ୍ରୀ—
ଆଉ
ଏହି 'ଶ୍ରୀ' କଥାଟି ଆସିଛି
ସେବା କରିବାଠାରୁ ;—
ତୁମେ
ଯଥୋପଯୁକ୍ତଭାବେ
ତୁମର ସଂସାର ଓ
ସଂସାରର ପାରିପାର୍ଶ୍ୱିକର

ଯେଉଁଠି ଯେତେଟା ସମ୍ଭବ,
ବାକ୍ୟ, ବ୍ୟବହାର, ସହାନୁଭୂତି, ସାହାଯ୍ୟ ଦ୍ୱାରା
ଅବିରୋଧଭାବରେ ଅନ୍ୟର
ମଙ୍ଗଳ କରିବାକୁ ଚେଷ୍ଟା କର,—
ତୁମର ଲକ୍ଷ୍ମୀ-ଆଖ୍ୟା
ଖ୍ୟାତିମଣ୍ଡିତ ହେବ—
ଦେଖିବ ।୩୫।

## ସେବାର ଅପଘାତ

ସାବଧାନ ଥାଅ—
କାହାରିକି ଭଲ କରିବାକୁ ଯାଇ
ଅନ୍ୟର ଭଲକୁ
ବିଧ୍ୱସ୍ତ କର ନାହିଁ,—
ଜଣକର ସୁଖ୍ୟାତି କରିବାକୁ ଯାଇ
ଅନ୍ୟର ଅଖ୍ୟାତି କର ନାହିଁ,
ଜଣକର ସେବା କରିବାକୁ ଯାଇ
ଅନ୍ୟ ପ୍ରତି ଦୃଷ୍ଟିହୀନ ହୁଅନାହିଁ ;—
ସାଧାରଣତଃ
ଏହାହିଁ ଘଟିଥାଏ—
ତୁମେ କିନ୍ତୁ
ଏହା ପ୍ରତି
ବିଶେଷ ନଜର ରଖ ।୩୬।

## ଛଦ୍ମବେଶରେ କାମ

ପ୍ରଣୟ ଯେତେବେଳେ
ଈର୍ଷ୍ୟାକୁ ଡାକି ଆଣେ—



ବୁଝିବାକୁ ହେବ—
ପ୍ରକୃତ କାମ
ପ୍ରେମର
ମୁଖା ପିନ୍ଧି
ଛିଡ଼ା ହୋଇଥିଲା ।୩୭।

## ସ୍ଫୁରିତ—ନାରୀତ୍ୱରେ ପୁରୁଷର ଉଦ୍ଦୀପ୍ତି

ନାରୀ
ଯେତେହିଁ
ତାହାର ବୈଶିଷ୍ଟ୍ୟରେ
ମୁକ୍ତ ହେବ,—
ପୁରୁଷଠାରେ
ସେହି ସଂଘାତ
ସଂକ୍ରାମିତ ହୋଇ
ପୁରୁଷତ୍ୱକୁ
ସେତେହିଁ ଉଦ୍ଦାମ ଓ ଉନ୍ନତ କରିତୋଳିବ ;
ଆଉ,
ପୁରୁଷର ପୁରୁଷତ୍ୱ
ଯେତେହିଁ ଅନାବିଳ ଉନ୍ମୁକ୍ତ ହେବ,
ନାରୀଠାରେ ତାହା ସଂକ୍ରାମିତ ହୋଇ
ତାହାର ବୈଶିଷ୍ଟ୍ୟକୁ
ସାର୍ଥକ କରି ତୋଳିବ ;—
ପ୍ରକୃତି ଓ ପୁରୁଷର ଏହାହିଁ ପ୍ରକୃତ ଲୀଳା—
ଯେ-ଲୀଳାରେ
ଭଗବାନ୍
ମୂର୍ତ୍ତିମାନ୍ ହୋଇ—

ତାଙ୍କର ପ୍ରକୃତିରେ ଅଧିଷ୍ଠିତ ଥାଆନ୍ତି ;—
ଯଦି ଭୋଗ କରିବାକୁ ଚାହ,
ସାର୍ଥକ ହେବାକୁ ଚାହ,
ବୈଶିଷ୍ଟ୍ୟକୁ ଲାଞ୍ଛିତ କର ନାହିଁ—ଉନ୍ନତ କର ।୩୮।

## ସେବାରେ ସଂସ୍ରବ

ଯେପରି ଭାବରେ
ଯେତେଟିକିଏ ସମ୍ଭବ—
ସମସ୍ତଙ୍କର ସେବା କରିବ—
କିନ୍ତୁ
ଉପଯୁକ୍ତ ସ୍ଥାନ-ବ୍ୟତୀତ
ସଂସ୍ରବରେ ଯିବ ନାହିଁ ।୩୯।

## ଦାନରେ ତୃପ୍ତିହିଁ ପ୍ରେମର ନିର୍ଦ୍ଦେଶକ

ତୁମେ ପାଅ ବୋଲି
ଯିଏ ତୁମ ନିକଟରେ ଆଦରସ୍ଥାନୀୟ,
ତାହା ଅପେକ୍ଷା—
ଯେଉଁଠି
ଦେଇ, ଅନୁସରଣ କରି—
କୃତାର୍ଥ ହୁଅ,
ସାର୍ଥକ ମନେକର—
ତୁମର ଭକ୍ତି ବା ଭଲପାଇବା
ସେହିଠାରେହିଁ ପ୍ରକୃତ ;—
ଆଉ,
ତାହା ଦ୍ୱାରାହିଁ
ତୁମର ଉନ୍ନତି ସମ୍ଭବ—



ସେହି ଉନ୍ନତି
ତୁମର ଚରିତ୍ରକୁ
ରଞ୍ଜିତ କରିପାରେ
—ନିଶ୍ଚୟ ।୪୦।

## ପ୍ରଣୟରେ ସଂକ୍ରମଣ

ପ୍ରେମାସ୍ପଦଙ୍କଠାରେ ପ୍ରଣୟହିଁ
ଅନ୍ୟଠାରେ
ପ୍ରଣୟ ସୃଷ୍ଟି କରିପାରେ—
ଯଦି ତାହାର ବାଞ୍ଛିତ
ସେହି ପ୍ରେମାସ୍ପଦହିଁ ହୁଅନ୍ତି ।୪୧।

## ଭଲ ପାଇବାରେ ଆବିଷ୍କାର

ଏକମାତ୍ର ଭଲପାଇବାହିଁ—
ତାହାର ପ୍ରିୟଙ୍କ ଜୀବନ, ଯଶ, ପ୍ରୀତି ଓ ବୃଦ୍ଧିକୁ
ଉନ୍ନତି-ପଥରେ ନେବାକୁ ହେଲେ
କ'ଣ କରିବାକୁ ହେବ,
ଆବିଷ୍କାର କରି,
ତାହା ବାସ୍ତବରେ ପରିଣତ କରିପାରେ ;—
ତୁମେ
ଯାହାଙ୍କୁ ପ୍ରିୟ ବୋଲି
ମନେ କରୁଛ—
ତୁମର ମନ ଓ ମସ୍ତିଷ୍କର ଅବସ୍ଥା
ତଦନୁରୂପ ହୋଇପାରିଛି କି ନାହିଁ—
ତାହା ଦେଖି ବୁଝିପାରିବ
ତୁମର ଭଲପାଇବାରେ
ଭେଜାଲ ଅଛି କି ନାହିଁ ।୪୨।

## ସ୍ୱଜାତି—ବିଦ୍ୱେଷରେ

ସାଧାରଣତଃ ସ୍ତ୍ରୀଲୋକମାନଙ୍କର ଦେଖାଯାଏ
ସ୍ୱଜାତିରେ ଅସହାନୁଭୂତି ଓ ଉପେକ୍ଷା,—
ଆଉ,
ଏହାର ଅନୁସରଣ କରେ
ଦୋଷଦୃଷ୍ଟି, ଈର୍ଷ୍ୟାପ୍ରବଣତା, ଆକ୍ରୋଶ ଓ
ପରଶ୍ରୀକାତରତା ;—
ଆଉ, ତାହା ଫଳରେ—
ଅନ୍ୟର ଅପ୍ରତିଷ୍ଠା ଆଣିବାକୁ ଯାଇ
ନିଜର ପ୍ରତିଷ୍ଠାକୁ ମଧ୍ୟ
ନଷ୍ଟ କରି ପକାନ୍ତି ;—
ତୁମେ କଦାପି
ଏପରି ହୁଅନାହିଁ,—
ଅନ୍ୟାୟକୁ ଅନାଦର କରି ମଧ୍ୟ
ବୋଧ ଓ ଅବସ୍ଥା ପ୍ରତି ଦୃଷ୍ଟିରଖି—
ସହାନୁଭୂତି ଓ ସାହାଯ୍ୟପ୍ରବଣ ହୁଅ,—
ଖ୍ୟାତି
ତୁମକୁ ପରିଚର୍ଯ୍ୟା କରିବ—
ସନ୍ଦେହ ନାହିଁ ।୪୩।

## ବାକ୍—ନିୟନ୍ତ୍ରଣରେ

ଅନ୍ତତଃ କଥାକୁ
ଯଦି ଏପରିଭାବେ
ବ୍ୟବହାର କରିବାର ଅଭ୍ୟାସ
ଚରିତ୍ରଗତ କରି ପକାଇ ପାର—



ଯେଉଁଥିରେ
ମଣିଷର ଦୁଃଖ, ଅମଙ୍ଗଳ, ଅସନ୍ତୋଷ
ଉପସ୍ଥିତ ନ ହୁଏ—
ତାହାହେଲେ ଦେଖିବ—
କେତେଦୂର ତୃପ୍ତି,
କେତେଦୂର ସନ୍ତୋଷ,
କେତେଦୂର ସହାନୁଭୂତି ଲାଭର
ଅଧିକାରୀ ହୋଇଛ
ତାହାର ଇୟତ୍ତା ନାହିଁ ;—
ଆଗ୍ରହର ସହିତ
ଇଚ୍ଛାକୁ ଆମନ୍ତ୍ରଣ କର,—
ଅଭ୍ୟାସରେ ଲାଗିଯାଅ—
ପାରିବ ନାହିଁ ?—
ନିଶ୍ଚୟ ପାରିବ ।୪୪।

## ବ୍ରତ ଓ ନିୟମରେ

ବ୍ରତ ଓ ନିୟମକୁ
ତ୍ୟାଗ କରିବ ନାହିଁ—
ବରଂ
କାହିଁକି କରନ୍ତି,
କେମିତି କରି କରନ୍ତି,
ଏହା କରିଲେ କ'ଣ ଫଳ ହୋଇପାରେ—
ଭଲକରି ବୁଝି,
ଯାହା ତୁମର ଧର୍ମ
ଅର୍ଥାତ୍ ଜୀବନ, ଯଶ ଓ ବୃଦ୍ଧିକୁ
ଉନ୍ନତ କରିତୋଳେ—

ତାହାହିଁ କର,
ଅନୁଷ୍ଠାନ କର—
ଉପଭୋଗ ଅବଶ୍ୟ କରିବ ।୪୫।

## ଶିଳ୍ପବ୍ରତ

ମୋର ମନେହୁଏ,
ବ୍ରତ ଭିତରେ ଏହି ବ୍ରତଟିର ଅନୁଷ୍ଠାନ କରିବା
ପ୍ରତ୍ୟେକ ସ୍ତ୍ରୀଲୋକରହିଁ ଅବଶ୍ୟ କର୍ତ୍ତବ୍ୟ,—
ସେଇଟି ହେଉଛି ଶିଳ୍ପବ୍ରତ ;
ଏପରି-କିଛି ଅଭ୍ୟାସ କରିବା ଦରକାର—
ଯାହା ଖଟାଇ ଅନ୍ତତଃପକ୍ଷେ ତୁମେ ନିଜେ—
ଅଶକ୍ତ ହେଲେ
ତୁମର ସ୍ୱାମୀ, ସନ୍ତାନ-ସନ୍ତତି ଇତ୍ୟାଦିଙ୍କର୍
ପେଟର ଭାତ,
ପିନ୍ଧିବାର ଲୁଗା,
ଆଉ, ଅବଶ୍ୟ-ପ୍ରୟୋଜନୀୟ ଯାହା-କିଛିର
ସଂସ୍ଥାନ କରିପାର ;—
ତୁମର ଅବସ୍ଥାରେ ଯଦି ଅନଟନ ନ-ବି ଥାଏ,
ତଥାପି
ତୁମର କିଛି ଉପାର୍ଜନ
ସଂସାରକୁ
ଉପଢୌକନ-ସ୍ୱରୂପ
ଦେବାହିଁ ଉଚିତ ;—
ଏଥିରେ
ଆତ୍ମପ୍ରସାଦ ଲାଭ କରିବ,
ଅନ୍ୟର ଗଳଗ୍ରହ ହେବାର ଭୟ ରହିବ ନାହିଁ,



ଡାଚ୍ଛିଲ୍ୟର ପାତ୍ରୀ ହେବ ନାହିଁ,
ଆଦର ଓ ସମ୍ମାନ ଅତୁଟ ରହିବ ;—
'ଶିଳ୍ପ' କହିଲେ କିନ୍ତୁ ଶ୍ରମଶିଳ୍ପ—
ଆଉ, ଏଇଟି ବାଦ୍ ଦେଇ
ଲକ୍ଷ୍ମୀଙ୍କ ବ୍ରତ
ସମ୍ଭବ କି ନା ଜାଣେନା ।୪୬।

## ଶୁଚି ଓ ପରିଚ୍ଛନ୍ନତାରେ

ସବୁ ସମୟରେ
ଶୁଚି ଓ ପରିଚ୍ଛନ୍ନ ଥାଅ,
ତୁମର ଶରୀର ଓ ଚାରିଦିଗ ଯେପରି
ସଫାସୁତୁରା,
ପରିଷ୍କାର-ପରିଚ୍ଛନ୍ନ ଥାଏ,—
ମଇଳା, ଦୁର୍ଗନ୍ଧ ବା ଆଲୁବାଲୁ ନ ଥାଏ,—
ସଜ୍ଜିତ କରି ରଖ—
ଦେଖିବା ମାତ୍ରକେ ଯେପରି
ସୁନ୍ଦର ଓ ସ୍ୱସ୍ତିକୁ
ଅନୁଭବ କରାଯାଏ ;—
ତାହାବୋଲି,
ଶୁଚିବାଇଗ୍ରସ୍ତ ହୁଅନାହିଁ—
ଦେଖିବ
ସ୍ୱାସ୍ଥ୍ୟ ଓ ତୃପ୍ତି
ତୁମକୁ ଅଭିନନ୍ଦିତ କରିବ ;—
ଅଶୁଚି ଓ ଅପରିଚ୍ଛନ୍ନତା—
ପାତିତ୍ୟ ମଧ୍ୟରେ
ଏଗୁଡ଼ିକ ମଧ୍ୟ କମ୍ ନୁହେଁ ।୪୭।

## ଦୋଷର ଅନାଦର—ଦୋଷୀର ନୁହେଁ

ଦୋଷ, ଅନ୍ୟାୟ ଓ ଅପବିତ୍ରତାକୁ
ଅନାଦର କର,—
କିନ୍ତୁ ତାହାବୋଲି
ଯେଉଁମାନେ ତାହା କରନ୍ତି
ସେମାନଙ୍କୁ ନୁହେଁ ;—
ସେମାନେ ଯେପରି
ଆଦର, ସହାନୁଭୂତି ଓ ସେବାରେ—
ତୁମଠାରେ ସ୍ଥାନ ପାଇ,
ତୁମ ପ୍ରତି ମୁଗ୍ଧ ହୋଇ,
ତୁମର ଆଳାପ, ଆଲୋଚନାରେ
ଏଗୁଡ଼ିକୁ ବେଶ୍-କରି ଚିହ୍ନି,
ଏପରିଭାବେ ପରିହାର କରନ୍ତି—
ଯେପରି ସେମାନଙ୍କ ସୀମାରେ ମଧ୍ୟ
ତାହା ଉଙ୍କିମାରି ନ ପାରେ,—
ଧନ୍ୟା ହେବ ଓ ଧନ୍ୟ କରିବ—
ତାଙ୍କର ଆଶୀର୍ବାଦ
ତୁମଠାରେ ଉଛୁଳି ପଡ଼ିବ—
ଦେଖିବ । ୪୮ ।

## ଭୋଗାନ୍ଧତାରେ

ତୁମର ଭାବ ବା ଧରଣକୁ
ଯେତେହିଁ ଭୋଗମୁଖର କରି ରଖିବ,
ପ୍ରକୃତ ଭୋଗ
ତୁମଠାରୁ ସେତେ ଦୂରରେ ରହିବ,—



କାରଣ,
ଭୋଗାନ୍ଧ ମନ
କେବେହେଲେ ବୁଝିପାରେ ନା—
କାହାକୁ ନେଇ
କ'ଣ ଦେଇ
କିପରି ଭାବରେ
ଭୋଗଲିପ୍ସାକୁ
ତୃପ୍ତ କରିବାକୁ ହୁଏ ;—
ତୁମର ପ୍ରଣୟର ଧାରା
ଯଦି ଏପରିହିଁ ହୋଇଥାଏ—
ତୁମେ
ଚିରକାଳ
ଅତୃପ୍ତ ରହିବ—
ସନ୍ଦେହ ନାହିଁ । ୪୯ ।

## ବନ୍ଧ୍ୟା—ଭୋଗରେ

ତୁମର
ସାଜସଜ୍ଜା, ସୁଖ ଇତ୍ୟାଦି
ଯଦି କାହାରି ବି
ତୃପ୍ତି, ତୁଷ୍ଟିରୁ
ଉଦ୍ଭବ ନ ହେଲା,—
ଆଉ, ତାହା
ଅନ୍ୟ ସମସ୍ତଙ୍କୁ ଯଦି
ତୃପ୍ତ, ପୁଷ୍ଟ ବା ସୁଖୀ କରି ନ ତୋଳିଲା,—
ଲକ୍ଷ ଭୋଗ ତୁମକୁ
ଭୋଗ-ସୁଖରେ ସୁଖୀ କରି ପାରିବ ନାହିଁ—

ଏହା ଠିକ୍ ଜାଣି ରଖ ;
ଏପରି ବନ୍ଧ୍ୟା-ଭୋଗ
ତୁମକୁ
ଆହୁରି
ଈର୍ଷ୍ୟା, ଆକ୍ରୋଶ, ଅତୃପ୍ତି ଓ
ଦୁଃଖର ଦେଶକୁ
ନେଇଯିବ ।୫୦।

## ନ—କରିବା ଦାବୀରେ

କାହାରି ପ୍ରତି କିଛି ନ କରି
(ଯେଉଁଥିରେ ମଣିଷ ସ୍ୱସ୍ତି, ଶାନ୍ତି ଓ ଆନନ୍ଦ ପାଏ
ଏପ୍ରକାରର)
ଆପଣାର ବୋଲି ଭାବି
ଦାବୀ କର ନାହିଁ—
ପାଇବ ନାହିଁ—
ବରଂ
ଲାଞ୍ଛିତ ହେବ ।୫୧।

## କ୍ଷୁଧାରେ ଉଦ୍ୟମ

ଯଦି ଉଦ୍ୟମୀ
ଓ
ନିରଳସ
ହେବାକୁ ଇଚ୍ଛାଥାଏ—
କ୍ଷୁଧାକୁ ବିସର୍ଜନ ଦିଅନାହିଁ,
କ୍ଷୁଧାହିଁ
ଭୁକ୍ତ ଆହାର୍ଯ୍ୟକୁ



ପୁଷ୍ଟିର ଉପଯୋଗୀ କରିନିଏ,—
ଆଉ,
ଏହି ପୁଷ୍ଟିହିଁ
ଶକ୍ତିର ଇନ୍ଧନ ।୫୨।

## ଆହାର୍ଯ୍ୟ

ଆହାର୍ଯ୍ୟ ତୁମର
ଏପରି ହେବା ଉଚିତ—
ଯାହାକୁ
ପରିପାକ କରି—
ସହଜରେହିଁ
ତୁମର କ୍ଷୁଧା
ଜାଗ୍ରତ ହୋଇପାରେ ;—
ଆଉ,
ଏହି ପରିପାକ ଫଳରେ
ତୁମର
ଉପଯୁକ୍ତ ପୁଷ୍ଟି
ଆଣି ଦିଏ ।୫୩।

## ଆହାର୍ଯ୍ୟରେ—ଶରୀର ଓ ମନରେ

ଯେପରି
ଚିମୁଟା କାଟିଲେ,
ଘୃଣିତ ବସ୍ତୁ ଦର୍ଶନ କଲେ,
ଅପସନ୍ଦ ବ୍ୟବହାର ପାଇଲେ,
ମନର ବିକ୍ଷେପ ଉପସ୍ଥିତ ହୁଏ,—
ସେହିପରି

ଆହାର୍ଯ୍ୟ ବସ୍ତୁ
ଶରୀର ଉପରେ
ଯେପରିଭାବେ କ୍ରିୟାକରେ—
ମନର ରକମ ମଧ୍ୟ
ସେହିପରି ହୋଇଉଠେ ;—
ମନେରଖ—
ଆହାର୍ଯ୍ୟବସ୍ତୁ ସହିତ
ମନର ସମ୍ବନ୍ଧ
ଏପରିଭାବେହିଁ ଘନିଷ୍ଠ—
ହିସାବ କରି ଚାଲ ।୫୪।

## ଅଶୁଦ୍ଧ ପାରିପାର୍ଶ୍ୱିକରେ

ସ୍ୱାସ୍ଥ୍ୟ ଯେପରି
ମନକୁ ନିୟନ୍ତ୍ରିତ କରିପାରେ,
ମନ ମଧ୍ୟ ସେହିପରି
ସ୍ୱାସ୍ଥ୍ୟକୁ ବଶକୁ ଆଣିପାରେ ;—
ତୁମର ମନ
ଯେତେ
ଶୁଦ୍ଧ, ସୁସ୍ଥ ଓ ସବଳ ରହିବ,
ତୁମର ସ୍ୱାସ୍ଥ୍ୟ ମଧ୍ୟ ଅନେକାଂଶରେ
ତାହାର ଅନୁସରଣ କରିବ ;—
ଆଉ,
ଏହି ସ୍ୱାସ୍ଥ୍ୟ ଲାଭ କରିବାକୁ ଗଲେହିଁ
ନଜର ରଖିବାକୁ ହେବ—
ତୁମର ପାରିପାର୍ଶ୍ୱିକର ପରିଶୁଦ୍ଧତା ପ୍ରତି ;
ଅଶୁଦ୍ଧ ପାରିପାର୍ଶ୍ୱିକ



ସ୍ୱାସ୍ଥ୍ୟ ଓ ମନକୁ
ଯେତେ ବିଗାଡ଼ି ଦେଇପାରେ,
ସେପରି ଅନ୍ୟ କିଛି ଖୁବ୍ କମ୍‌ହିଁ ଅଛି—
ନଜର ରଖିବ ।୫୫।

## ଏକପାତ୍ରରେ ଆହାର

ଅନେକେ ମିଳି ଏକପାତ୍ରରେ ଆହାର କରିବ ନାହିଁ,—
ବରଂ
ଏକସଙ୍ଗରେ ଆହାର କରିବ—
ଯଦି ପ୍ରୟୋଜନ ବିବେଚନା କର ;
ଏକ ପାତ୍ରରେ ଆହାରରୁ
ଅନେକ ରୋଗ ସଂକ୍ରମିତ ହୁଏ,—
ଏହା ବହୁ ଦେଖାଯାଇଛି,
ଏହାଫଳରେ—
ତୁମେ ରୋଗଦୁଷ୍ଟ ହୋଇ
ସମସ୍ତ ପରିବାରକୁ ମଧ୍ୟ ରୋଗଦୁଷ୍ଟ କରିପକାଇପାର !
ଯାହା ସ୍ୱାସ୍ଥ୍ୟ, ଆନନ୍ଦ ଓ ଜୀବନକୁ
ଅବନତ କରେ, ତାହାହିଁ ପାପ ;—
ତେଣୁ,
ସୁସ୍ଥ ଗୁରୁଜନଙ୍କ ବ୍ୟତୀତ କାହାରି
ଉଚ୍ଛିଷ୍ଟ-ଭୋଜନକୁ
ହିନ୍ଦୁମାନେ—ହିନ୍ଦୁ କାହିଁକି ବୈଜ୍ଞାନିକମାନେ ମଧ୍ୟ—
ବିଶେଷଭାବରେ ନିନ୍ଦା କରିଛନ୍ତି ।୫୬।

## ପରିଶ୍ରମରେ

ଯେପରି ଆହାର କରିଲେହିଁ
କୋଷ୍ଠଶୁଦ୍ଧିର ପ୍ରୟୋଜନ,—

ସେହିପରି
ପୁଷ୍ଟି ପାଇବାକୁ ହେଲେହିଁ
ବିଧାନର (system) ତ୍ୟକ୍ତ-ପଦାର୍ଥର ନିଃସରଣ
ଅତି ଅବଶ୍ୟ ପ୍ରୟୋଜନ ;—
ଆଉ,
ଏହି ଉଦ୍ଦେଶ୍ୟରେ
ଉପଯୁକ୍ତ ପରିଶ୍ରମ—
ଅନ୍ତତଃ ଯେତେକ୍ଷଣ ସ୍ୱେଦୋଦ୍‌ଗମ ନ ହୁଏ—
ସ୍ୱାସ୍ଥ୍ୟ ପକ୍ଷରେ
ଅମୂଲ୍ୟ ଓ ଅମୃତତୁଲ୍ୟ ।୫୭।

## ରୁଗ୍‌ଣାବସ୍ଥାରେ

ରୋଗଗ୍ରସ୍ତ ଯେତେବେଳେ ତୁମେ—
ଜନସଂସର୍ଗରୁ ଯେତେଦୂର ସମ୍ଭବ ଦୂରରେ ରୁହ;
ପାରତ ନିଜକୁ ଏପରିଭାବରେ ଉପଯୁକ୍ତ ପ୍ରକାରରେ
ବିଚ୍ଛିନ୍ନ କରି ରଖ—
ଯଦ୍ଦ୍ୱରା ଅନ୍ୟଠାରେ ତୁମର ରୋଗ
କୌଣସି ପ୍ରକାରରେ ଏକଦମ୍
ସଂକ୍ରାମିତ ନ ହୁଏ ;—
ଶୋଇବା, ବସିବା, ଆଳାପ ଇତ୍ୟାଦିରେ ମଧ୍ୟ
ବେଶ୍ ନଜର ରଖିବ—ସେହି ସଂକ୍ରମଣ ଦିଗରେ ;
ଆଉ, ତୁମର ସେବା-ଶୁଶ୍ରୂଷାରେ ଯେଉଁମାନେ ନିରତ ଅଛନ୍ତି,
ସମ୍ଭବ ହେଲେ ବୁଝାଇ ଦିଅ
ଓ ନଜର ରଖ—
ଯେପରି ସେମାନେ ପରିଚ୍ଛନ୍ନ ନ ହୋଇ
ଜନସଂସର୍ଗରେ ନ ଯାଆନ୍ତି ;



ଦେଖିବ—ତୁମର ରୋଗଗ୍ରସ୍ତ ଅବସ୍ଥା
କଟିଗଲେ ବି
ପୁନରାୟ ନାନା ପ୍ରକାରରେ ଆକ୍ରାନ୍ତ ହେବାର
ଭୟ ଓ ସମ୍ଭାବନା
କମ୍‌ହିଁ ରହିବ ।୫୮।

## ଛଦ୍ମବେଶୀ ମାତୃଭାବରେ

ଅନେକ ଦୁର୍ବଳଚେତା, ନୀଚ ଚିନ୍ତାପରାୟଣ ପୁରୁଷ—
ବିଶେଷତଃ ତାଦୃଶ ଯୁବକମାନେ—
ସେମାନଙ୍କର କାମଲୋଲୁପତାକୁ
ଭ୍ରାତୃତ୍ୱ ବା ସନ୍ତାନତ୍ୱର
ମୁଖା ପିନ୍ଧାଇ—
ମା, ମାଉସୀ, ଭାଇ, ଭଉଣୀ ଇତ୍ୟାଦି
ସମ୍ବୋଧନର ସାହାଯ୍ୟରେ
ଝିଅମାନଙ୍କ ନିକଟକୁ ଯାଇ
ହାବଭାବ-ଆଦର-ଆବ୍‌ଦାରରେ
ସେମାନଙ୍କୁ ବଶକୁ ଆଣି,—
ଦୁଧ ଖାଇବା, ଚୁମ୍ବନ, ଜଡ଼ାଇ ଧରିବା ଇତ୍ୟାଦି
ଭିତର-ଦେଇ—
ସେମାନଙ୍କର ନୀଚ କାମ-ପ୍ରବୃତ୍ତିକୁ
ଚରିତାର୍ଥ କରି ନିଅନ୍ତି—
ଯାହାକି ସେମାନଙ୍କର ମାଉସୀ, ଭଉଣୀ ବା ଗର୍ଭଧାରିଣୀ
ସହିତ କଦାପି କରନ୍ତି ନାହିଁ ;
ସାବଧାନ ହୁଅ
ଏପରି ମା, ମାଉସୀ, ପୁଅ,
ଭାଇ ଇତ୍ୟାଦି ସମ୍ବନ୍ଧଠାରୁ,—
ଏଥିରେ ଝିଅମାନେ

କାମଭାବରେ ଉଦ୍ଦୀପ୍ତ ହୋଇ
ଏପରି ପୁରୁଷଙ୍କଠାରେ ଢଳି ପଡ଼ନ୍ତି—
ଫଳରେ ଆତ୍ମବିକ୍ରୟ କରିବାକୁ ବାଧ୍ୟ ହୁଅନ୍ତି ;—
ଗୋପନତାହିଁ
ଏମାନଙ୍କର ଉତ୍ତମ କ୍ଷେତ୍ର ;—
ତେଣୁ,
ସେମାନେ ପ୍ରାୟଶଃ
ଲୋକମାନଙ୍କଠାରୁ ଦୂରେଇ ରହିବାକୁ ଚାହାନ୍ତି ;—
ଲୋକଙ୍କ ନିକଟରେ ପ୍ରତିପନ୍ନ କରିଥା'ନ୍ତି
ସେମାନେ ଖୁବ୍ ସାଧୁ ଓ ଆଦର୍ଶ ଚରିତ୍ର ;—
ଉଭୟଙ୍କୁ ଉଭୟେ
ପାରିପାର୍ଶ୍ୱିକର ଚକ୍ଷୁ ଏଡ଼ାଇବା ପାଇଁ
ପ୍ରଚାର କରିଥା'ନ୍ତି ;—
କିନ୍ତୁ ବାସ୍ତବତାରେ
ସେମାନଙ୍କର ଚରିତ୍ରରେ
ସେପରି-କିଛି ବି ଭଲ ଦେଖାଯାଏ ନାହିଁ ;
ଯେ-କେହି ହେଉନା କାହିଁକି
ପୂର୍ବରୁହିଁ ସାବଧାନ ହୁଅ,—
ଆଉ, ଯଦି ଭୁଲ କରି କିଛିଦୂର
ଅଗ୍ରସର ହୋଇଥାଅ-
ଏହିସବୁ ଲକ୍ଷଣ ଦେଖିବାମାତ୍ରେ ହିଁ
ଘୁଞ୍ଚି ଛିଡ଼ାହୁଅ ;
ମନକୁ ସଂଯତ କର,
ପଦଦଳିତ କରି, ଉପଯୁକ୍ତ ଶିକ୍ଷାଦେଇ
ତାହାକୁ ବିଦାୟ କର—
ବୁଝିବ—ନେକଡ଼ା ବାଘ ମଧ୍ୟ
ଏମାନଙ୍କଠାରୁ ଚରିତ୍ରବାନ୍ । ୫୯ ।



## ବିବାହ—ପରିହାରରେ

ଆଦର୍ଶାନୁପ୍ରାଣତା
ଯଦି ତୁମକୁ
ଉଦ୍ଦାମ କରି ତୋଳିଥାଏ,—
ଯଦି ତୁମେ ତୁମର ହୃଦୟରେ
ତାହାଙ୍କ ଛଡ଼ା
ଆଉ କାହାରିକୁ ହେଲେ ସ୍ଥାନ ଦେଇ ନ ପାର,—
ଆଉ,
ତାହାଙ୍କୁ ଯଦି ତୁମର
ପାରିପାର୍ଶ୍ୱିକ ଓ ଜଗତରେ
ପ୍ରତିଷ୍ଠା କରିବାର ଉନ୍ମାଦନା
ଅଟୁଟଭାବରେ ଗ୍ରାସ କରିଥାଏ,—
ମନେହୁଏ—
ବିବାହ ନ କରି ମଧ୍ୟ
ଜୀବନ ପୁଣ୍ୟ ଓ ପବିତ୍ରତାରେ ଅତିବାହିତ କରି,
ସମସ୍ତଙ୍କୁ ଉଜ୍ଜ୍ୱଳ କରି—
ଉଜ୍ଜ୍ୱଳତର ହୋଇ ପାରିବ ;—
ନିଜକୁ ବୁଝି ଦେଖିବ ;
ଯଦି ଆବିଳତା ଦେଖିବାକୁ ପାଅ,
ତୁମର ବିବାହରେ ବ୍ରତୀ ହେବା ହିଁ ଶ୍ରେୟଃ । ୬୦ ।

## ଅଧୀନ ବୋଧରେ ଭଲପାଇବା

ପ୍ରକୃତ ପ୍ରେମ ବା ଭଲପାଇବା
ଚିରବହନଶୀଳ, ଚିରସହନଶୀଳ ;—
ତେଣୁ, ତାହା ତା'ର ପ୍ରେମାସ୍ପଦକୁ

ନିରବଚ୍ଛିନ୍ନଭାବରେ
ସହିଥାଏ—ବହିଥାଏ,—
ବିରକ୍ତ ହୁଏ ନା,
ଅବଶ ହୁଏ ନା,
ଦୁର୍ବଳ ହୁଏ ନା—
ସେ ତାହାର ପ୍ରେମାସ୍ପଦକୁ ଏମିତି କରି
ସର୍ବତୋଭାବରେ
ସହ୍ୟକରେ ଓ ବହିଥାଏ,
ଆଉ, ଏହି ସହ୍ୟ କରିବା ଓ ବହନ କରିବାରେ
ତା'ର ଆନନ୍ଦ, ଉଦ୍ୟମ ଓ ଉତ୍‌ଫୁଲ୍ଲତା ;
ତେଣୁ, ସେ ଭାବି ପାରେ ନା ଯେ
ସେ ତା'ର ପ୍ରେମାସ୍ପଦର
ଅଧୀନ ହୋଇଅଛି,
ଆଉ, ଏହି ଅଧୀନ-ବୋଧ ଯେଉଁଠାରେ,
ସେଠାରେ କାମର ଘୃଣ୍ୟ ପୂତିଗନ୍ଧ
ଯାହା ବାସନା-ବା-ଚାହିଦା-ଚାପା ଥିଲା—
ତାହାର ଅଭାବ ବା ପୂରଣରେ
ବିଦ୍ୱେଷମୂର୍ତ୍ତିରେ ବିଚ୍ଛୁରିତ ହେଉଛି
ଠିକ୍ ଜାଣିରଖ । ୬୧ ।

## ଜନନୀତ୍ୱରେ ଜାତି

ନାରୀଠାରୁ ଜନ୍ମେ
ଓ ବୃଦ୍ଧି ପାଏ—
ତେଣୁ, ନାରୀ
ଜନନୀ ;—



ଆଉ, ଏମିତି କରିହିଁ
ସେ
ଜାତିର ବି ଜନନୀ,
ତାହାର ଶୁଦ୍ଧତାର ଉପରେହିଁ
ଜାତିର ଶୁଦ୍ଧତା ନିର୍ଭର କରୁଛି ;—
ସ୍ଖଳିତ ନାରୀ-ଚରିତ୍ରରୁ
ବ୍ୟର୍ଥ ଜାତିହିଁ
ଜନ୍ମଲାଭ କରିଥାଏ—
ବୁଝି ଦେଖ—
ନାରୀର ଶୁଦ୍ଧତାର
ପ୍ରୟୋଜନୀୟତା କ'ଣ ? । ୬୨ ।

## ପତଳାମିରେ

ଅନେକ ସ୍ତ୍ରୀଲୋକ
ସଂସର୍ଗଦୋଷରେ ହେଉ—
ବା
ଅନିୟନ୍ତ୍ରିତ ହୋଇ ହେଉ—
କିପରି ଗୋଟାଏ ପତଳା ଚରିତ୍ରକୁ ଧରି ରଖନ୍ତି—
ଯେପରି କୌଣସି କଥାକୁ ହଜମ କରି ପାରନ୍ତି ନାହିଁ;
କଥା ଯେପରି
ମସ୍ତିଷ୍କରେ ପ୍ରବେଶ କରିହିଁ
କିପରି ଗୋଟାଏ ଅସ୍ୱଚ୍ଛନ୍ଦ ଯନ୍ତ୍ରଣାର
ସୃଷ୍ଟି କରେ—
ଅନ୍ୟ ନିକଟରେ ଢାଳିବା ଛଡ଼ା
ଯେପରି ଉପାୟାନ୍ତର ନ ଥାଏ ;—

ଏଇଟି ବଡ଼ ମନ୍ଦ ଅଭ୍ୟାସ—
ଏ-ଅଭ୍ୟାସ ସ୍ତ୍ରୀ-ଜଗତରେ ଯେତେ ଅକଲ୍ୟାଣ ଆଣିଛି
ତାହା ଅନ୍ୟସବୁ ତୁଳନାରେ ଅନେକ ବେଶି ;—
କେହି ଯଦି ତୁମକୁ ବିଶ୍ୱାସକରି
କିଛି କହି ଥାଏ
ଆଉ, ତାହା ପ୍ରକାଶ କଲେ
ତାହାର ବା ଅନ୍ୟ କାହାର ଅକଲ୍ୟାଣ ହୁଏ—
ସେ ଯଦି ତାହା ପ୍ରକାଶ କରିବାକୁ
ନିଷେଧ ବି କରି ନ ଥାଏ,
ତୁମେ ତାହା କେବେ ହେଲେ ପ୍ରକାଶ କର ନାହିଁ;
ଆଉ, ସେ-କଥା ଯଦି ଏପରି ହୁଏ—
ଯା'ପ୍ରକାଶ ନ କଲେ ତାହାର ବା ଅନ୍ୟର
ଅକଲ୍ୟାଣ ଅତୀବ ନିଶ୍ଚୟ,—
ଆଉ, ତାହାକୁ ଯଦି ତୁମେ କଲ୍ୟାଣରେ ନିୟନ୍ତ୍ରିତ କରି
ନ ପାର—
ତେବେ ଏପରି ଲୋକ ନିକଟରେ କୁହ
ଯିଏ ଉପଯୁକ୍ତ ପ୍ରକାରରେ
ନିୟନ୍ତ୍ରିତ କରି ପାରିବେ ବୋଲି ମନେହୁଏ
ଏବଂ ଯେ କହିଛି
ତାହାପ୍ରତି କୌଣସି ଅମଙ୍ଗଳ ନ ଘଟେ ;
ଏଥିରେ ଭଲହିଁ ହେବ—
ଅନେକ ଅସୁବିଧା ହାତରୁ
ନିଷ୍କୃତି ପାଇବ,—
ହିସାବ କରି ଚାଲ । ୬୩ ।



# ନମ୍ୟତାରେ ବିପର୍ଯ୍ୟୟ

ସ୍ତ୍ରୀ-ଚରିତ୍ର ସହଜନମ୍ୟ—
ତେଣୁ
ନିର୍ବିଚାର ପୁରୁଷ-ଚର୍ଯ୍ୟାରେ
ସହଜରେହିଁ
ଆନତ ଓ ରଞ୍ଜିତ ହୋଇଉଠେ ;
ଏହା ସ୍ତ୍ରୀ-ଜାତିର ଗୋଟିଏ
ଲକ୍ଷଣୀୟ ଲକ୍ଷଣ ;—
ତେଣୁ, ଉପଯୁକ୍ତ ବର ଯଦି ପାଇବାକୁ ଚାହ
ପୁରୁଷଙ୍କଠାରୁ
ଏପରି ଦୂରତ୍ୱରେ ରୁହ
ଯେଉଁଥିରେ ନଜରରେ ଥାଏ
ଅଥଚ ମିଶ୍ରଣ ନ ଘଟେ ;
ତୁମେ ବୋଧ କରି ପାରିବ ଓ
ଉପଯୁକ୍ତ ମନୋନୟନ ଘଟିବ;—
ଆଉ, ଏଇ ନିର୍ବିଚାର ପରିଚର୍ଯ୍ୟା ଫଳରେ ;—
ଅଧଃପତନର
ଅଶେଷବିଧ ଗୁପ୍ତ ଆକ୍ରମଣ
ତୁମକୁ ବିଧ୍ୱସ୍ତ ଓ ବିପନ୍ନକରି
ପାତିତ୍ୟର ତମସାଚ୍ଛନ୍ନ ଗହ୍ୱରକୁ
ନେଇ ଯାଇପାରେ,
ସଜାଗ ଥାଅ—
ସାବଧାନ ହୁଅ ! । ୬୪ ।

## ନମ୍ୟତାରେ ଉତ୍କର୍ଷ

ନାରୀ-ପ୍ରକୃତି ନମ୍ୟ—
ତେଣୁ ସେ ଭଲକୁ ମଧ୍ୟ
ଅଟୁଟଭାବରେ
ଜାବୁଡ଼ି ଧରିପାରେ,
ଆଉ, ଏହି-ଧରିବା ପ୍ରକୃତ ହେଲେ
ତାହା ଅବ୍ୟର୍ଥ;—
ଜଗତକୁ ଉପେକ୍ଷା କରି ମଧ୍ୟ
ଯାହାକୁ ଜାବୁଡ଼ି ଧରିଅଛି,
ତାହାକୁ ନେଇ
ଅଟଳଭାବରେ
ଛିଡ଼ାହୋଇ ରହିପାରେ,
ତୁମେ
ଯାହାଠାରୁ ତୁମର ଜୀବନ, ଯଶ ଓ ବୃଦ୍ଧି
କ୍ରମୋନ୍ନତିରେ ପରିଚାଳିତ ହୁଏ—
ହ୍ରାସ ବା ସମକୁ ତାଚ୍ଛିଲ୍ୟ କରି ମଧ୍ୟ
ତାହାଙ୍କୁହିଁ ଅଟୁଟଭାବରେ
ଜାବୁଡ଼ି ଧର—
ଉନ୍ନୟନ ତୁମକୁ କଦାପି
ତ୍ୟାଗ କରି ପାରିବ ନାହିଁ—
ଏହା ଅତି ନିଶ୍ଚୟ । ୬୫ ।

## ବର—ବରଣରେ—ଅସଂସ୍ରବ

ଯଦି ଉପଯୁକ୍ତ ସ୍ୱାମୀ ଲାଭ କରିବାକୁ ଚାହ—
ପୁରୁଷଙ୍କଠାରୁ ଦୂରରେ ରୁହ—



କାହାକୁ ହେଲେ ବି
ସ୍ୱାମୀ ଭାବରେ
କଳ୍ପନା କରନାହିଁ,—
କାରଣ,
ଏହାଦ୍ୱାରା
ମନ
କାମଲୋଲୁପ ହୋଇ
ତୁମର ଦୃଷ୍ଟିକୁ
ଅସ୍ୱଚ୍ଛ କରିତୋଳିବ ;
—କିନ୍ତୁ ଯାହାଙ୍କୁ ସ୍ୱାମୀ କରିବାକୁ ଚାହ
ତାଙ୍କର ଇଷ୍ଟ, ଆଚାର, ବଂଶ, ଯଶ, ସ୍ୱାସ୍ଥ୍ୟ,
ଶ୍ରଦ୍ଧା, ଜ୍ଞାନ ଇତ୍ୟାଦି
ତୁମର
କାମ୍ୟ, ସହନୀୟ ଓ ବହନୀୟ କି ନୁହେଁ—
ଅବଲୋକନ କର
ଏବଂ
ମଙ୍ଗଳାକାଙ୍କ୍ଷୀ ଗୁରୁଜନଙ୍କ ସହିତ
ଆଲୋଚନା କର,
ପ୍ରାପ୍ତିରେ
ଭ୍ରାନ୍ତି
କମ୍‌ହିଁ ଘଟିବ । ୬୬ ।

## କାମପ୍ରବୃତ୍ତିରେ ସ୍ୱାମୀ—ସ୍ତ୍ରୀ

କେବଳ କାମପ୍ରବୃତ୍ତି
କେବେ ବି
କାହାକୁ ହେଲେ

ପ୍ରକୃତ ସ୍ୱାମୀ
ବା
ସ୍ତ୍ରୀ
କରି ପାରେନା—
ପାରିନାହିଁ । ୬୭ ।

## ଚାଟୁତାରେ ବିପର୍ଯ୍ୟୟ

ଅନେକ ଝିଅ—
ସୌନ୍ଦର୍ଯ୍ୟର ସୁଖ୍ୟାତି,
କୌଣସି କାର୍ଯ୍ୟରେ ବାହାଦୁରି,
ପ୍ରଶଂସା, ଉପହାର ଇତ୍ୟାଦି
ସ୍ତ୍ରୀ ବା ପୁରୁଷ,—ବିଶେଷତଃ ପୁରୁଷଙ୍କ ନିକଟରୁ ପାଇଲେ—
ସେଥିରେ ହଠାତ୍
ଏତେ ଯେ ଢଳିପଡ଼ନ୍ତି—
ସେତେବେଳେ ଦୁଷ୍ଟବ୍ୟକ୍ତି କାଇଦା କରି
ଯାହା ଇଚ୍ଛା ତା' କରାଇ ନେଇପାରେ ;
ତୁମେ କିନ୍ତୁ ସାବଧାନ ହୁଅ—
ସୁଖ୍ୟାତିରେହିଁ ହେଉ—
ଆଉ, ନିନ୍ଦାରେ ବି ହେଉ—
ନିଜତ୍ୱରେ ଅଟୁଟ ରହି
ପ୍ରୟୋଜନାନୁଯାୟୀ
ଯାହା ଭଲ ବିବେଚନା କର
ସେପରିଭାବରେ ଚାଲ—
କଳଙ୍କରୁ ରକ୍ଷା ପାଇବ । ୬୮ ।



## ନାରୀରେ ପୂର୍ବପୁରୁଷ

ଗର୍ବର ସହିତ ସ୍ମରଣ କର—
ତୁମଠାରେ ଯେ-ଜୀବନ ପ୍ରବାହିତ ହେଉଛି,
ତାହା ତୁମର
ପୂର୍ବ-ପୂର୍ବ ପୁରୁଷମାନଙ୍କୁ ବହନ କରି ;—
ଯାହାଙ୍କୁ ଅର୍ଘ୍ୟ ଦେଇ
ତୁମର ପୂର୍ବ-ପୂର୍ବ ପୁରୁଷ
ପ୍ରୀତ ଓ ଫୁଲ୍ଲ ହୁଅନ୍ତି ମନେକର,—
ଯାହାଙ୍କର ବା ଯେ-ବଂଶର ଚରଣସ୍ପର୍ଶରେ
ସେମାନେ ଧନ୍ୟ ହୁଅନ୍ତି ମନେକର,—
ତୁମେ
ନତଜାନୁ ହୋଇ
ତାହାଙ୍କ ଚରଣରେହିଁ ଅବନତ ହୁଅ—
ତାହାଙ୍କୁହିଁ ବରଣ କର,—
'ସ୍ୱାମୀ'-ସମ୍ବୋଧନ ତାହାଙ୍କୁହିଁ କର,—
ଆଉ, ତୁମର ଏହି ଚିନ୍ତା
ଓ ସମ୍ବୋଧନ ଭିତର-ଦେଇ
ଉତ୍‌ଫୁଲ୍ଲ କଣ୍ଠରେ ତୁମର ପୂର୍ବପୁରୁଷଗଣ ମଧ୍ୟ
ମଙ୍ଗଳ ବର୍ଷଣ କରିବେ !
ନିନ୍ଦିତ ହୁଅନାହିଁ,
ସେମାନଙ୍କୁ ବେଦନାପ୍ଲୁତ କରନାହିଁ,
ଉଦ୍‌ବୁଦ୍ଧ ହୁଅ—ଉଜ୍ଜ୍ୱଳ ହୁଅ,—
ବଂଶ ଓ ଜାତିକୁ ଉନ୍ନତ କର । ୬୯ ।

## କଳ୍ପନାପ୍ରହେଳିକାରେ ସ୍ୱାମୀ—ବରଣ

ଯେଉଁ-ସ୍ତ୍ରୀମାନେ
ସ୍ୱାମୀକୁ
ସେମାନଙ୍କର କଳ୍ପନାନୁଯାୟୀ
ପାଇବାକୁ ଚାହାନ୍ତି—
ବାସ୍ତବରେ ଉଦ୍‌ବୁଦ୍ଧ ହୋଇ
ସ୍ୱାମୀକୁ ବରଣ କରନ୍ତି ନାହିଁ,—
ସେମାନେ
ସ୍ୱାମୀ ସହିତ
ଯେତିକି ପରିଚିତ ହୁଅନ୍ତି,
ସେତିକି
ନିରାଶ ହୁଅନ୍ତି ;—
ଅବଶୋଷ, ଦୋଷଦୃଷ୍ଟି, ଜୀବନରେ ଧିକ୍କାର ଇତ୍ୟାଦି
ସେମାନଙ୍କର
ପାର୍ଶ୍ୱାନୁଚର ହୋଇ
ଅବସାଦରେ ଅବସାନ କରେ,—
ଆଉ, ସେହି ହତଭାଗ୍ୟ ପୁରୁଷର ମଧ୍ୟ
ଶେଷ ନିଃଶ୍ୱାସ
ଏମିତି-କରିହିଁ
ମରଣରେ ବିଲୀନ ହୋଇଯାଏ !
ଭୁଲ କର ନାହିଁ,
ଏପରି ମରଣକୁ
ଆମନ୍ତ୍ରଣ କର ନାହିଁ ।୭୦।



## ବରଣରେ—ବଂଶାନୁକ୍ରମିକତା

ପୁରୁଷର ଆଦର୍ଶାନୁରାଗ
ଶ୍ରଦ୍ଧା ଓ ଭକ୍ତିରୁ ଉତ୍ପନ୍ନ ;—
ଯାହାଙ୍କଠାରୁ ପ୍ରେରଣା ପାଇ,
କର୍ମାନୁଷ୍ଠାନ କରି,
ସେବା କରି—
ଯେଉଁ ବୋଧ ଓ ଜ୍ଞାନର ଉତ୍ପତ୍ତି ହୁଏ,
ତାହା ସନ୍ତାନର ମୂଳଗତ ଧାତୁରେ ସଂକ୍ରାମିତ ହୋଇ
ଯେ-ସ୍ୱଭାବର ସୃଷ୍ଟି କରେ,
ତାହାହିଁ ତାହାର ଆଦିମ ସଂସ୍କାର ;
ତାହାର ଏହି ସଂସ୍କାରହିଁ
ତାହାର ପାରିପାର୍ଶ୍ୱିକଠାରୁ
ବାଞ୍ଛିତ ଉପକରଣ ସଂଗ୍ରହ କରି
ବିବର୍ଦ୍ଧିତ ହୋଇ
ମଣିଷ ହୋଇ ଛିଡ଼ାହୁଏ ;—
ତେଣୁ, ମଣିଷର ଉନ୍ନତିର ମୂଳ ଉପାଦାନହିଁ ହେଉଛି
ପୁରୁଷପରମ୍ପରାଗତ ଆଦର୍ଶାନୁରାଗରୁ ଉଦ୍‌ଭୂତ
ଏହି ବଂଶାନୁକ୍ରମିକତା (Cultural heredity) ;
ଏହା ଯେଉଁଠାରେ ଶ୍ରେଷ୍ଠ—
ବରଣ-ବ୍ୟାପାରରେ ତାହାହିଁ ଅଗ୍ରଗଣ୍ୟ ଓ ଆଦରଣୀୟ ;
ମନେରଖିବ—
ଏହି ବର୍ଣ୍ଣ ଓ ବଂଶକୁ ତାଚ୍ଛିଲ୍ୟ କରିଲେ
ସବଂଶେ ଯେ ତୁମେ ମରଣଯାତ୍ରୀ ହେବ
ସେ-ସମ୍ବନ୍ଧରେ ଆଉ ଭୁଲ କେଉଁଠି ? ।୭୧।

## ବିବାହରେ ଉଦ୍‌ବର୍ଦ୍ଧନ ଓ ସୁପ୍ରଜନନ

ବିବାହ
ମଣିଷର
ପ୍ରଧାନ ଦୁଇଟି କାମନାକୁହିଁ
ପରିପୂରଣ କରେ ;—
ସେଥିରୁ ଗୋଟିଏ
ଉଦ୍‌ବର୍ଦ୍ଧନ,
ଅନ୍ୟଟି ସୁପ୍ରଜନନ ;—
ଅନୁପଯୁକ୍ତ ବିବାହ
ଏ ଦୁଇଟିକୁହିଁ
ଖିନ୍ନ କରିଦେଇଥାଏ ;
ସାବଧାନ !
ବିବାହକୁ ଖେଳଣା ଭାବ ନାହିଁ—
ଯେଉଁଥିରେ
ତୁମର ଜୀବନ
ଓ
ଜନନ ଜଡ଼ିତ ।୭୨।

## ବରଣରେ—ବିଚାର

ବରଣ କରିବାକୁ ହେଲେହିଁ ଦେଖିବ—
ସ୍ୱାମୀଙ୍କର ଆଦର୍ଶ କଣ ବା କିପରି,
ତାଙ୍କର ଆରାଧନାରେ
ଚେଷ୍ଟା ଓ କର୍ମର ନିଆଁରେ
ତୁମକୁ ଆହୁତି ଦେଇ ସାର୍ଥକ ହେବାର
ପ୍ରଲୋଭନ



ତୁମକୁ ପ୍ରଲୁବ୍ଧ କରେ କି ନା ;
ଆଉ, ତୁମେ ଯାହାଙ୍କୁ ବରଣ କରିବାକୁ ଚାହଁ,
ସେ
ତାଙ୍କପ୍ରତି କିପରି ଓ କେତେଦୂର—
କାରଣ, ତୁମେ ତାଙ୍କର ସହଧର୍ମିଣୀ ହେବାକୁ ଯାଉଛ ;
ଏଥିରେ ଯଦି ତୁମେ ଉଦ୍‌ବୁଦ୍ଧ ହୁଅ—
ଆଉ, ଜାତି, ବର୍ଣ୍ଣ, ବଂଶ, ବିଦ୍ୟାରେ—
ଯଦି—ତୁମର ବରଣୀୟ ଯିଏ—
ସେ ସର୍ବତୋଭାବେ
ତୁମଠାରୁ ଶ୍ରେଷ୍ଠ ହୁଅନ୍ତି—
ଏବଂ ତୁମର ପୂର୍ବପୁରୁଷଙ୍କର ଅର୍ଘ୍ୟଣୀୟ ବୋଲି
ବିବେଚନା କର—
ତେବେ-ତାଙ୍କୁ ବରଣ କରିଲେ
ବିପତ୍ତିର ହାତକୁ
ଏଡ଼ିଦେଇ ପାରିବ—
ଏହା ଠିକ୍ ଜାଣ ।୭୩।

## ବରଣର ଶ୍ରେଷ୍ଠ କ୍ଷେତ୍ର

ଏହି ବର୍ଣ୍ଣ ଓ ବଂଶାନୁକ୍ରମିକତାର
ଭିତ୍ତି ଉପରେ—
ବୋଧ, ବିଦ୍ୟା, ଚରିତ୍ର ଓ ବ୍ୟବହାର
ଯେଉଁଠାରେ
ପୁଷ୍ଟ ଓ ପବିତ୍ର—
ତାହାହିଁ ହେଉଛି ତୁମର
ବରଣ କରିବାର
ଶ୍ରେଷ୍ଠ କ୍ଷେତ୍ର ;—

ମନେରଖିବ—
ତୁମର ଭଲପାଇବା
ଯେଉଁଠାରେ—ଯେପରିଭାବରେ
ନ୍ୟସ୍ତ ହେବ—
ଫଳର ଉଦ୍ଭବ ମଧ୍ୟ
ସେହିପରି ହେବ
ସନ୍ଦେହ ନାହିଁ—
ବୁଝି ଚାଲିବ ।୭୪।

## ବରଣ—ପୁରୁଷର ନାରୀଲୋଲୁପତାରେ

ଯେଉଁଠାରେ ଦେଖିବ
ବଂଶ, ବର୍ଣ୍ଣ, ବିଦ୍ୟା ଇତ୍ୟାଦିରେ
ଶ୍ରେଷ୍ଠ ହୋଇ ମଧ୍ୟ—
କୌଣସି ପୁରୁଷ
ତୁମକୁ ସ୍ତ୍ରୀ ରୂପେ ପାଇବାକୁ
ପାଗଳ ହୋଇଉଠିଅଛି—
ତାହାକୁ ସନ୍ଦେହ କର,—
ତାହାର ଧାତୁ (temperament)
ବା
ଚରିତ୍ରରେ
ଏପରି ଆବିଳତା, ଅନୈଷ୍ଠିକତା ଓ ଅସ୍ଥିରତା
ଚୋରପରି
ଲୁଚି ରହିଛି—
ଯାହା ସହଜରେ କେହି ଧରିପାରିବେ ନାହିଁ ;—
ସେ-ପୁରୁଷ ତୁମଠାରେ ଆନତ ହେଲେ
ତୁମର ସନ୍ତାନ-ସନ୍ତତି



କଦାପି ଉତ୍ତମ ହେବେନାହିଁ ;—
ତୁମକୁ ଶାରୀରିକଭାବରେ ବହନ କରିଲେ ମଧ୍ୟ
ଅନ୍ତରରେ ତୁମେ
ବିକ୍ଷିପ୍ତ ରହିବ—
ଅତଏବ ତାହାକୁ ନେଇ
ସୁଖୀ ହୋଇପାରିବ କି ନା ସନ୍ଦେହ ;
ଢଳି ପଡ଼ ନାହିଁ—
ବେଶ୍ କରି ପର୍ଯ୍ୟବେକ୍ଷଣ କର—
ବିବେଚନା କର ।୭୫।

## ବିବାହରେ ବହନ—କ୍ଷମତା

ପ୍ରକୃଷ୍ଟରୂପେ ବହନ କରିବାକୁହିଁ
ବିବାହ କୁହାଯାଏ,
ଯେ ବହନ କରିବ
(ଆଉ ଏହି-ବହନ ଯେତେ ପ୍ରକାରରେ ହୋଇପାରେ)
ସେ ଯଦି—
ଯାହାକୁ ବହନ କରିବାକୁ ହେବ
ତାହାଠାରୁ
ସର୍ବପ୍ରକାରରେ-ସର୍ବବିଷୟରେ
ସମର୍ଥ ନ ହୁଏ—
ତା ହେଲେ କେମିତି ହେବ ?
ଯାହାକୁ ତୁମେ—ତୁମର ସର୍ବପ୍ରକାରରେ
ବହନ କରିବା ପାଇଁ
ପ୍ରାର୍ଥନା କରୁଅଛ,
ସେ ତୁମର ସେ-ପାର୍ଥନା
ପୂରଣ କରିବାର

ଉପଯୁକ୍ତ କି ନୁହଁନ୍ତି
ବିବେଚନା କରି
ନିଜକୁ ଦାନ କର,—
ପତନ, ବେଦନା ଓ ଆଘାତରୁ
ଉତ୍ତୀର୍ଣ୍ଣ ହେବ । ।୭୬।

## ବରେଣ୍ୟ—ବରଣ

ପୁରୁଷ—ଯିଏ ସର୍ବପ୍ରକାରରେହିଁ
ତୁମଠାରୁ ଶ୍ରେଷ୍ଠ—
ଓ ତୁମଠାରେ
ତୁମର ଯେ-ପୂର୍ବପୁରୁଷଗଣ ଅଧିଷ୍ଠିତ
ସେମାନଙ୍କର ବରେଣ୍ୟ,—
ଯାହାଙ୍କ ସହିତ
ଆଦର୍ଶରେ ଆହୁତି ହେବାର ପ୍ରଲୋଭନ
ତୁମକୁ—
ସହ୍ୟ ଓ ବହନ କରିବାର ଉନ୍ମାଦନାରେ
ଉଦ୍ଦାମ କରିତୋଳିଅଛି—
ତୁମେ
ତାଙ୍କରହିଁ ବଧୂ ହୁଅ—
ସାର୍ଥକ ହେବ । ।୭୭।

## ସାର୍ଥକ ବଧୂତ୍ୱରେ

ତୁମେ ଯଦି
କୌଣସି ଉପଯୁକ୍ତ—
ସର୍ବପ୍ରକାରରେ ତୁମଠାରୁ ଶ୍ରେଷ୍ଠ



ପୁରୁଷକୁ
ଏପରିଭାବରେ ବହନ କରିପାରିବ
ବିବେଚନା କର—
ଯେଉଁଥିରେ ସେ
ଜୀବନ, ଯଶ ଓ ବୃଦ୍ଧିରୁ
କୌଣସି ପ୍ରକାରରେ ବି ଅବନତ ନ ହୁଅନ୍ତି,
ତେବେ
ତାଙ୍କର ବଧୂ ହୁଅ—
ସତୀ ହୋଇପାରିବ—
ଗରିମାମୟୀ ହେବ ।୭୮।

## ବରଣ—ସେବା ଓ ସ୍ତୁତିର ଆକୃତିରେ ବିବାହ

ଯଦି କୌଣସି ପୁରୁଷର
ଆଦର୍ଶାନୁପ୍ରାଣତା ଓ ସର୍ବପ୍ରକାରର ଶ୍ରେଷ୍ଠତ୍ୱ
ତୁମକୁ ଶ୍ରଦ୍ଧାଭକ୍ତିରେ
ଅବନତ ଓ ନତଜାନୁ କରି—
ତାଙ୍କର ସେବାରେ
କୃତାର୍ଥ କରିବାକୁ ଚାହେ—
ଅନ୍ତରରୁ ମୁଖରେ
ଯାହାଙ୍କର ସ୍ତୁତିଗାନ
ଉଚ୍ଛୁଳି ଉଠେ,
ତାହାଙ୍କୁ ତୁମେ ବରଣ କରିପାର—
ଆତ୍ମଦାନ କରିପାର,
ତାଙ୍କର ସ୍ତ୍ରୀତ୍ୱ ଲାଭ କରି
ସ୍ତୁତି ଓ ସେବାରେ
ଧନ୍ୟ ହେବ—
ସନ୍ଦେହ ନାହିଁ ।୭୯।

## ବିବାହରେ—ଅନୁଲୋମ ଓ ପ୍ରତିଲୋମ

ଅନୁଲୋମ ଯେପରି
ଉନ୍ନତକୁ ପ୍ରସବ କରେ,
ପ୍ରତିଲୋମ ଠିକ୍ ସେହିପରି
ଅବନତିକୁ ବୃଦ୍ଧି କରେ ;—
ତେଣୁ
ପ୍ରତିଲୋମ ବିବାହ
ଏପରି ପାପ—
ଯାହା
ନିଜର ବଂଶକୁ
ଧ୍ୱଂସରେ ଅବସାନ ତ କରେ ;—
ତାହା ଛଡ଼ା
ପାରିପାର୍ଶ୍ୱିକ ବା ସମାଜକୁ ମଧ୍ୟ
ବେକ ଧରି
ବିଧ୍ୱସ୍ତି ଆଡ଼କୁ
ଚାଳିତ କରେ ;—
ଅସତୀ ସ୍ତ୍ରୀର ନିଷ୍କୃତି
ବରଂ ସମ୍ଭବ,
କିନ୍ତୁ ପ୍ରତିଲୋମଜ ହୀନତ୍ୱର
ଅପଳାପ
ଅତ୍ୟନ୍ତହିଁ ଦୁଷ୍କର ।୮୦।

## ପ୍ରଜନନ—ନିୟନ୍ତ୍ରଣରେ—ନାରୀର ଭାବ ଓ ଦାୟିତ୍ୱ

ବିବାହର ଅନେକଗୁଡ଼ିକ ମଧ୍ୟରୁ
ଗୋଟିଏ ପ୍ରଧାନ ପ୍ରୟୋଜନ
ସୁପ୍ରଜନନ,



ଆଉ,
ଏହି ସୁପ୍ରଜନନକୁ ନିୟନ୍ତ୍ରିତ କରେ
ନାରୀର ଭାବ—
ଯାହା ପୁରୁଷକୁ ଉଦ୍ଦୀପ୍ତ କରି
ଆନତ କରେ ;
ତେଣୁ
ନାରୀ ଯାହାକୁ
ବହନ କରି, ଧାରଣ କରି
କୃତାର୍ଥ ଓ ସାର୍ଥକ ହେବ,—
ବିବେଚନା କରି
ସର୍ବବିଷୟରେ ଶ୍ରେଷ୍ଠ ସେପରି
ପୁରୁଷ ସହିତହିଁ
ପରିଣୀତ ହେବା ଉଚିତ ;
ଅତଏବ
ବିବାହରେ ପୁରୁଷକୁ ବରଣ କରିବାର ଭାର
ନାରୀଠାରେ ଥିବା ସମୀଚୀନ ବୋଲି
ମନେହୁଏ ;—
ତାହା ନୁହେଁ କି ?
ତୁମେ ନିଜେ ବିବେଚନା କରି ଓ ଗୁରୁଜନମାନଙ୍କ ସହିତ
ଆଲୋଚନା କରି
ତୁମର ବରକୁ ବରଣ କର ।୮୧।

## ବିବାହରେ ବୟସର ପାର୍ଥକ୍ୟ

ଯାହାକୁ ପତିରୂପେ ବରଣ କରିବାର
ସମ୍ଭାବନା ଅଛି—
ତାହାକୁ

କେବଳ ବନ୍ଧୁପରି ଚିନ୍ତା କର ନାହିଁ,
ବରଂ ଭାବ—
ଦେବତା ପରି,
ଆଚାର୍ଯ୍ୟଙ୍କ ପରି ;
ଭାବ ଓ ବୟସର ନୈକଟ୍ୟ
ମଣିଷର
ବୋଧ ଓ ଗ୍ରହଣକ୍ଷମତାର
ଦୂରତ୍ୱ ଘଟାଇଥାଏ ;—
ତେଣୁ—
ସ୍ୱାମୀ-ସ୍ତ୍ରୀଙ୍କର ବୟସର ପାର୍ଥକ୍ୟ
ପୁରୁଷର ଯେ—ବୟସରେ
ପ୍ରଥମ ସନ୍ତାନ ହୋଇପାରେ
ସେତେଦୂର
ହେବାହିଁ ଉଚିତ ।୮୨।

## ଯୁବତୀର ଯୋଗ୍ୟବର

ଯୁବତୀ କନ୍ୟାର—
ଯୌବନର ଶେଷ ଓ ପ୍ରୌଢତ୍ୱର ଆରମ୍ଭ
ଏପରି ବୟସର ବର ହେବାହିଁ ଶ୍ରେୟଃ,—
ଏଥିରେ
ସ୍ତ୍ରୀର ଜୀବନୀଶକ୍ତି
ପୁରୁଷଠାରେ ସଂକ୍ରାମିତ ହୋଇ
ଓ ପୁରୁଷର ଜୀବନୀଶକ୍ତି
ସ୍ତ୍ରୀଠାରେ ସଂକ୍ରାମିତ ହୋଇ
ଗୋଟାଏ ସମତା ଉତ୍ପାଦନ କରି
କ୍ଷୟର ଦୈନ୍ୟ ଆଣିଥାଏ ;—



ତେଣୁ,
ଶାସ୍ତ୍ରରେ ଅଛି—
ଏପରି ବିବାହ
ଧର୍ମ୍ୟ
ଅର୍ଥାତ୍, ଜୀବନ-ଓ-ବୃଦ୍ଧିପ୍ରଦ ।୮୩।

## ଧର୍ମାଚରଣରେ

'ଧର୍ମ'ମାନେହିଁ ହେଉଛି ତାହା
ଯାହାକି ଧରିରଖେ—
ଅର୍ଥାତ୍
ଯାହା କରିଲେ ବା ଯେ-ଆଚରଣରେ
ବା ଯେ-ଭାବ ପୋଷଣରେ
ମଣିଷର ଜୀବନ ଓ ବୃଦ୍ଧି
ଅକ୍ଷତ ଓ ଅବାଧ ହୁଏ ;
ତୁମେ ଯଦି ଧର୍ମଶୀଳା ହୁଅ,
ଦେଖିବ,
ତୁମର ପୁରୁଷ(ସ୍ୱାମୀ) ଓ ପରିବାରରେ
ଆପେ-ଆପେ
ତାହା ମାଡ଼ିଯାଉଛି,
କାରଣ, ସ୍ତ୍ରୀ ଯାହା ଚାହେ,
ପୁରୁଷର ଇଚ୍ଛା ତାହାହିଁ କରିବାକୁ ଚେଷ୍ଟା କରେ—
ଆଉ, ପୁରୁଷ ବେଳକୁ ମଧ୍ୟ
ସ୍ତ୍ରୀ ତଦ୍ରୂପ
ତାହାର ବୈଶିଷ୍ଟ୍ୟରେ ;
ତେଣୁ, ଦେଖିବାକୁ ପାଇବ—
ସେମାନଙ୍କର ଅଜ୍ଞାତସାରରେ,

ସେମାନଙ୍କର ଚରିତ୍ରରେ ମଧ୍ୟ
ତୁମର ସେହି ଧର୍ମପ୍ରାଣତା
ଉଦ୍‌ବୁଦ୍ଧ ହୋଇଉଠୁଛି—
ଆଉ,
ଏହା ଫଳରେ
ତୁମର ସଂସାର
ଶ୍ରୀ ଓ ଉନ୍ନତି ଆଡ଼କୁ
ଅଗ୍ରସର ହୋଇ
ରୋଗ-ଶୋକ-ଦୁର୍ଦ୍ଦଶା-ଦରିଦ୍ରତାଠାରୁ—
କ୍ରମେହିଁ ଅପସରି ଯାଉଛି ।୮୪।

## ସେବାରେ ପୂଜା ଓ ସ୍ନେହ

ତୁମେ ଶ୍ରେଷ୍ଠକୁ ଧାରଣ ଓ ପୂଜା କର,
ସାନକୁ ସ୍ନେହ ଓ ଉନ୍ନତ କର—
ସମସ୍ତଙ୍କର
ଯଥୋପଯୁକ୍ତଭାବରେ
ସେବା କର ।୮୫।

## ସେବାସମ୍ଭୋଗରେ ସ୍ୱାମୀ

ତୁମର
ସେବା, ଭକ୍ତି ଓ ପ୍ରେରଣା
ତୁମର ସ୍ୱାମୀ-ଦେବତାଙ୍କୁ
ଯେତେହିଁ ଉନ୍ନତିରେ
ଆରୂଢ଼ କରିତୋଳିବ,—
ତୁମ ନିକଟରେ ସେ
ସେତେହିଁ ବଡ଼ ହୋଇ ଦେଖାଦେବେ—



—ଆଉ, ଏହା
ନିତ୍ୟ
ନୂତନ କରି—
ନବୀନଭାବରେ ;—
ତେଣୁ,
ତୁମେ ମଧ୍ୟ ଏପରିଭାବରେ—
ତାହାଙ୍କୁ ନବୀନ କରି
ନିତ୍ୟ-ନୂତନ ଉପଭୋଗ ମାଧ୍ୟମରେ—
ଅଜ୍ଞାତସାରରେ—
କିପରି ଭାବେଯେ ଜଗତ ନିକଟରେ—
ମହୀୟସୀ, ଗରୀୟସୀ, ମଙ୍ଗଳରୂପିଣୀ ହୋଇ
ଆରାଧ୍ୟା ହୋଇ ଠିଆହେବ—
ବୁଝିବି ପାରିବ ନାହିଁ ।୮୬।

## ଜୀବନ—ଧର୍ମରେ ଇଷ୍ଟ

ଇଷ୍ଟ ବା ଆଦର୍ଶ ବା ଗୁରୁ
ତାହାହିଁ ବା ସେ,
ଯାହାଙ୍କୁ ଲକ୍ଷ୍ୟ କରି,
ଅନୁସରଣ କରି,
ମଣିଷ ଜୀବନ, ଯଶ ଓ ବୃଦ୍ଧିରେ
କ୍ରମୋନ୍ନତି ଲାଭ କରିପାରେ,—
ଆଉ,
ଆସକ୍ତି ବା ଭକ୍ତି ତାଙ୍କଠାରେ ନିବଦ୍ଧ ଥିବାରୁ—
ପାରିପାର୍ଶ୍ୱିକ ଓ ଜଗତ୍
ସେଥିରେ କୌଣସି ବିକ୍ଷେପ ସୃଷ୍ଟି କରି
ନ ପାରି—
ଜ୍ଞାନରେ ସମୃଦ୍ଧ କରିତୋଳେ ;—

ତେଣୁ—
ଆଦର୍ଶ ବା ଗୁରୁଙ୍କଠାରେ ଐକାନ୍ତିକତା
ଜୀବନ ପକ୍ଷରେ ଏତେ ପ୍ରୟୋଜନୀୟ ;
ଅତଏବ
ଧର୍ମସାଧନାର ପ୍ରଥମ ଓ ପ୍ରଧାନ ପ୍ରୟୋଜନହିଁ ହେଉଛି
ଇଷ୍ଟ, ଆଦର୍ଶ ବା ଗୁରୁ,—
ଆଉ,
ଧର୍ମଶୀଳା ହେବାକୁ ହେଲେହିଁ
ଦରକାର ତାଙ୍କଠାରେ ଭକ୍ତି
ଓ ତାଙ୍କର ଅନୁସରଣ ଓ ଆଚରଣ,
ସେ ଏପରି ଚରିତ୍ର ନେଇ,
ଯହିଁରେ ଏହି ଭକ୍ତି ବା ଆସକ୍ତି—
ସ୍ୱାମୀ ଓ ପାରିବାରିକ ସମସ୍ତଙ୍କ ଭିତରେ
ଯେପରି ଏଭଳି ପ୍ରେରଣାର ସୃଷ୍ଟି କରେ—
ଯେଉଁଥିରେ ସେମାନେ
ଏଥିରେ ଉଦ୍‌ବୁଦ୍ଧ ଓ ଅନୁପ୍ରାଣିତ ହୋଇଠନ୍ତି ;—
ଆଉ,
ଏପରି ହେଲେ ଯାଇ
ତୁମର ସହଧର୍ମିଣୀତ୍ୱ
ସାର୍ଥକ ହେବ,—
ଦେଖିବ
ଉଜ୍ଜ୍ୱଳ ହେବ
ଓ
ଉଜ୍ଜ୍ୱଳ କରିତୋଳିବ ।୮୭।

## ସ୍ୱାମୀପ୍ରତି ଦେବଭାବ

ସ୍ୱାମୀଙ୍କୁ
ଦେବତା ବୋଲି ମନେକରିବ—



ଆଉ,
'ଦେବତା' ମାନେ ତାହାହିଁ,
ଯାହା ବା ଯିଏ
ତୁମର ଚକ୍ଷୁ ସମ୍ମୁଖରେ
ଉଜ୍ଜ୍ୱଳ ହୋଇ ଛିଡ଼ା ହୋଇ
ମନକୁ ଉଜ୍ଜ୍ୱଳ ଓ ଉତ୍‌ଫୁଲ୍ଲ
କରିତୋଳୁଛନ୍ତି ;
ଦେଖ—
ତୁମର ସେବା, ଆଚରଣ
ବା ଭ୍ରାନ୍ତ ପ୍ରେରଣାରେ
ଏହା ଯେପରି ମଳିନ ହୋଇ
ନ ଉଠେ,—
ତୁମେ
ତାଙ୍କର ଜ୍ୟୋତି ଓ ଆନନ୍ଦର
ଇନ୍ଧନ ହୁଅ—
କିନ୍ତୁ
ଏତେ ବା ଏପରି ହୁଅ ନାହିଁ,
ଯେଉଁଥିରେ
ତାହା ଚାପାପଡ଼ି
ଲିଭିଯାଏ ।୮୮।

## ସ୍ୱାମୀପ୍ରତି ଜାଗ୍ରତ ଭଲପାଇବା

ଲକ୍ଷ୍ୟ ରଖିବ—
ତୁମର ସ୍ୱାମୀଙ୍କ ପ୍ରତି ଭଲ ପାଇବା
ଯେପରି ଜାଗ୍ରତ ଓ ପ୍ରେରଣାପୁଷ୍ଟ ଥାଏ,—
ସେ ଯେପରି

ତୁମ ସଂସ୍ରବରେ ଆସିହିଁ—
ଆଦର୍ଶ ଓ ପାରିପାର୍ଶ୍ୱିକର ସେବାରେ
ଉଦ୍ଦାମ ହୋଇ—
ବାସ୍ତବତାରେ ଉଛୁଳି ପଡ଼ନ୍ତି ;—
ତାଙ୍କର ସଙ୍କୋଚ ଆଣ ନାହିଁ,
ସଂକୀର୍ଣ୍ଣ କରି ତୋଳ ନାହିଁ,
ଆତ୍ମପରାୟଣତାରେ ନିବଦ୍ଧ କରି ତୋଳ ନାହିଁ—
ସ୍ୱସ୍ତି, ଯଶ ଓ ଶାନ୍ତି
ତୁମ ଉଭୟଙ୍କୁହିଁ
ବନ୍ଦନା କରିବ ।୮୯।

## ସ୍ୱାମୀ—ବିକ୍ଷେପରେ

ସ୍ତ୍ରୀ-ହିଁ ଯଦି ହୋଇଥାଅ—
ସ୍ୱାମୀଙ୍କଠାରୁ ବିକ୍ଷିପ୍ତ ହୁଅ ନାହିଁ—
ନିଜର ସର୍ବନାଶର ନିଆଁରେ
ତାଙ୍କୁ ଭସ୍ମସାତ୍ କର ନାହିଁ ।୯୦।

## ସ୍ୱାମୀର ଧାତୁର ସହିତ ପରିଚୟରେ

ତୁମର ସ୍ୱାମୀ ତୁମକୁ
ପସନ୍ଦ କଲେ ମଧ୍ୟ
ତାଙ୍କର ଧାତୁ, ଅବସ୍ଥା ଓ ପ୍ରୟୋଜନ ସହିତ
ଯଦି ପରିଚିତ ନ ଥାଅ,—
ଯଦି ବୋଧ ନ କର,
ସେ ତୁମ ସହିତ
ଆଳାପ, ଆଲୋଚନା, ଯୁକ୍ତି ଓ
ମୀମାଂସାରେ ନିରାଶ ହେବେ,—



ତୁମେ ତୁମର କଥାର
ସେପରି ଜବାବ ପାଇବ ନାହିଁ,—
ଫଳରେ, ତାଙ୍କର ମନଙ୍କୁ
ସ୍ନିଗ୍ଧ, ଶାନ୍ତ, ତୃପ୍ତ ଓ
ଉଦ୍‌ବୁଦ୍ଧ କରି
ପାରିବ ନାହିଁ,
ଉଭୟେହିଁ କ୍ରମାଗତ
କ୍ଷୁଣ୍ଣ ହେଉଥିବ ;—
ତେଣୁ, ପୁଣି କହେ—
ତୁମେ ସର୍ବପ୍ରକାରରେ
ତାହାଙ୍କୁ ଜାଣିନିଅ ।୯୧।

## ସ୍ୱାମୀର ଭଲପାଇବାର ପରିମାପରେ

ସ୍ୱାମୀ କେମିତି କରି
କେତେଦୂର
ତୁମକୁ ଭଲପାଆନ୍ତି,
ତାହାର ହିସାବ-ନିକାଶ
ରଖିବାକୁ ଯାଅ ନାହିଁ,—
ଅନ୍ୟର ଭଲପାଇବା ସାଥିରେ
ତାଙ୍କର ଭଲପାଇବାର ତୁଳନା କରି
କ୍ଷୁବ୍ଧ ହୁଅ ନାହିଁ,—
ଯାହା ପାଅ,
ସେଥିରେ ଉତ୍‌ଫୁଲ୍ଲ ହୁଅ ;
କିନ୍ତୁ ଦେବା ବେଳରେ
ତାଙ୍କର ଧାତୁ ଓ ଅବସ୍ଥା ବୁଝି
ଏପରି ଦିଅ,

ଯାହା ସେ କେବେ ବି କେଉଁଠାରୁ ପାଇନାହାଁନ୍ତି—
ଆଉ, ପାଇ ଅନ୍ୟ କେଉଁଠାରୁ ପାଇବାକୁ
ଆଶା ମଧ୍ୟ କରନ୍ତି ନାହିଁ,—
ଦେଖିବ—
ତୃପ୍ତି ଓ ଆନନ୍ଦ
ତୁମ ଉଭୟଙ୍କରହିଁ—
କିଣା ଗୋଲାମ ହୋଇରହିବ ।୯୨।

## ସ୍ୱାମୀର ବିବର୍ଦ୍ଧନରେ ପାତିବ୍ରତ୍ୟ

ତୁମ ଦ୍ୱାରା ଯଦି
ତୁମର ସ୍ୱାମୀଙ୍କର
ଆଦର୍ଶାନୁପ୍ରେରଣା, ଜୀବନ, ଯଶ ଓ କ୍ରମବର୍ଦ୍ଧନ
ଉନ୍ନତି ଆଡ଼କୁ
ଅଗ୍ରସର ନ ହେଲା—
ତେବେ
ତୁମର ପାତିବ୍ରତ୍ୟ
ମିଥ୍ୟା କଥା ।୯୩।

## ଆତ୍ମସୁଖରେ

ନିଜର ସୁଖ ବା ସମୃଦ୍ଧି ପାଇଁ
ତୁମର ସ୍ୱାମୀ-ଦେବତାଙ୍କ ନିକଟରେ
କିଛି ହେଲେ ପ୍ରାର୍ଥନା କରନାହିଁ—
ତାହା ବରଂ ପାଇବାର ଅନ୍ତରାୟ ;
କିନ୍ତୁ ତୁମର ସେବା
ଯଦି ତାହାଙ୍କୁ
ଇଷ୍ଟଙ୍କଠାରେ ଜୀବନ, ଯଶ ଓ ବିବର୍ଦ୍ଧନରେ



ଉନ୍ନତ ଓ ଉଚ୍ଛଳ କରିଦିଏ,—
ତେବେ ଏତେ ପାଇବ ଯେ—
ଭରପୂର ହୋଇଯିବ,
ଆଉ, ତୁମର ଏପରିଭାବରେ ପାଇବାର ବିବର୍ଦ୍ଧନ
ତାଙ୍କୁ ଆହୁରି ଉନ୍ନତ ଓ ଉଚ୍ଛଳ
କରିତୋଳିବ ।୯୪।

## ଅନୁପୂରଣରେ

ସ୍ୱାମୀଙ୍କର
ଇଷ୍ଟାନୁରକ୍ତି-ଯଶ-ଓ-ଜୀବନପ୍ରଦ
ଏପରି କିଛି—
ଯେଉଁଥିରେ ସେ
ଉତ୍‌ଫୁଲ୍ଲ ଓ ଆନନ୍ଦିତ ରହନ୍ତି—
ତାହା ତୁମ ମନକୁ ନ ପାଇଲେ ମଧ୍ୟ
ଅନୁକୂଳ ଚିନ୍ତାରେ ବୁଝି—
ଅନ୍ତରରେ, ବାହାରେ ଓ କର୍ମରେ
ଉତ୍‌ଫୁଲ୍ଲ ଓ ଆନନ୍ଦିତ ହୋଇ,
ତାହାର ଅନୁପୂରକ ହେବ,—
ସ୍ୱାସ୍ଥ୍ୟ, ସୁଖ ଓ ତୃପ୍ତି
ତୁମମାନଙ୍କୁ ଅଭିନନ୍ଦିତ କରିବ
ନିଶ୍ଚୟ ।୯୫।

## ସ୍ତ୍ରୈଣତ୍ୱରେ

ଯେତେବେଳେ ଦେଖିବ
ତୁମର ସ୍ୱାମୀ
ତୁମକୁ ନେଇ
ବ୍ୟସ୍ତ ହୋଇ ଉଠିଛନ୍ତି,—

ତୁମ ନିକଟରେ
କାଳକ୍ଷେପଣ କରିବାର ପ୍ରବଣତା
ଦିନକୁଦିନ ବଢ଼ିଉଠୁଛି—
ଯେଉଁମାନେ
ତୁମର ସେବା ବା ସୁଖ୍ୟାତି ନ କରନ୍ତି
ସେମାନଙ୍କ ଉପରେ ରୁଷ୍ଟଭାବ
ତାଙ୍କୁ ଯେପରି ଆବେଷ୍ଟନ କରି ପକାଇଛି—
ସାବଧାନ ହୁଅ,
ବୁଝିନିଅ—ସେ ମୂଢ଼ତାର ରାଜତ୍ୱରେ
ଦ୍ରୁତତର ଚାଲିଛନ୍ତି,—
ଫେରାଅ;—
ଶ୍ରଦ୍ଧା, ଭାବ ଓ ଭଲପାଇବା ସହିତ
ତୁମର ପସନ୍ଦକୁ ଉନ୍ମୁକ୍ତ କରି—
ତେଜସ୍ୱିନୀ ଭାଷା ଓ ବ୍ୟବହାରରେ
ତାଙ୍କୁ
ଆଦର୍ଶରେ
ଉଦ୍ଦାମ କରିତୋଳ ।୯୬।

## ଭିକ୍ଷୁକ ନ ସଜାଇବାରେ

ତୁମେ ତୁମର ସ୍ୱାମୀଙ୍କର ଭଲପାଇବାର
ଭିକ୍ଷୁକ ସାଜ ନାହିଁ ;
ବରଂ ତୁମେ ତାଙ୍କପ୍ରତି
ସେବା, ଯତ୍ନ, ଭକ୍ତି, ଭଲପାଇବାର
ଉତ୍ସ ହୋଇ ଛିଡ଼ାହୁଅ—
ଦେଖିବ—
ଦୁଃଖ ଓ ଦୋଷଦୃଷ୍ଟିରୁ
କେତେଦୂର ଛାଡ଼ ପାଇବ ।୯୭।



## ସୁପ୍ରଜନନରେ ନିଷ୍ଠା

କ୍ଷୀଣମତିର (The feeble-minded)
କୌଣସି-କିଛିରେ ଲାଗି-ରହିବା
ଅତ୍ୟନ୍ତ କଷ୍ଟକର ବୋଲି ମନେହୁଏ ;—
ଆଉ, ଏହି ଲାଗି-ରହିବା ଅଭ୍ୟାସକୁ
ଯେତେହିଁ ତାଚ୍ଛିଲ୍ୟ କରାଯାଏ,
ମନ ସେତେହିଁ
ଦୁର୍ବଳ, ଚଞ୍ଚଳ, କ୍ଷୀଣତର-ଚିନ୍ତାସମ୍ପନ୍ନ ହୁଏ—
ତେଣୁ—
ତାହାର ମାନସିକ ଅସ୍ଥିରତା
ଜୀବନକୁ ପ୍ରାୟ ଅବହନୀୟ
କରିତୋଳେ ;
ପୁଣି,
ଏପରି ଅସ୍ଥିର ଓ କ୍ଷୀଣମନା ସ୍ତ୍ରୀ
ତାହାର ସ୍ୱାମୀକୁ ତାଙ୍କର ଭାବଧାରାରେ
ଏପରିଭାବରେ ଉଦ୍‌ବୁଦ୍ଧ କରିପାରେ ନା
ଯେଉଁଥିରେ ତାଙ୍କର ମସ୍ତିଷ୍କ
ଭାବର ଆବେଗରେ
ସ୍ଫୀତ ଓ ଉତ୍‌ଫୁଲ୍ଲ ହୋଇ
ନିବିଡ଼ଭାବରେ ଆଲିଙ୍ଗନ କରେ ;
ଏବଂ ତାହାରି ଫଳରେ
ସେ ଏପରି ସନ୍ତାନର ଗର୍ଭଧାରିଣୀ ହୁଏ,—
ଯାହାର କ୍ଷୀଣ ଓ ଚଞ୍ଚଳ ମନ ଧାତୁଗତ ହୋଇଥାଏ—
ପରେ ତାହାର ସଂଶୋଧନ ଅତି ଦୁଷ୍କର ହୋଇଥାଏ,—
ଆଉ,
ଅଳ୍ପାୟୁ, ବେକୁବ ଓ ରୋଗସଂକୁଳ ସନ୍ତତିର

ଏହା ମଧ୍ୟ ଗୋଟାଏ ପ୍ରଧାନ କାରଣ ;
ତୁମେ ଯଦି
ଏପରି ହୋଇଥାଅ,
ଲାଗି-ରହିବା ବା ନିଷ୍ଠାକୁ
ଯତ୍ନରେ
ଚରିତ୍ରଗତ କରିବାକୁ ଚେଷ୍ଟାକର ;
ଯଦି ପାର,—
ଏହି ଦୁର୍ଦ୍ଦୈବର ହାତକୁ
ଏଡ଼ାଇବ,—
ଭାବ ନାହିଁ ।୯୮।

## ତୃପ୍ତିବର୍ଦ୍ଧନରେ ପ୍ରାଣବତ୍ତା

ସାଧାରଣତଃ
ଯେ-ନାରୀ
ତାହାର ସ୍ୱାମୀ ଦ୍ୱାରା
ଯେତେ ସହଜରେ—ସର୍ବପ୍ରକାରରେ
ସୁଖୀ ଓ ଖୁସି ହୁଏ,
ଅଥଚ
ସେବାରେ, ଯତ୍ନରେ ଓ ଭଲପାଇବାରେ—
ତାହାଙ୍କୁ
ତୃପ୍ତ କରିରଖେ,
ତାହାର ସ୍ୱାମୀ
ପ୍ରାଣବାନ୍ ହୋଇ
ସ୍ୱାସ୍ଥ୍ୟ ଓ ସୁଖରେ
ଧନ୍ୟ ହୋଇଥାଆନ୍ତି—
ଆଉ, ଏଇଟା
ପ୍ରାୟହିଁ ଦେଖାଯାଏ ।୯୯।



## ସ୍ୱାମୀ—ସ୍ତ୍ରୀର ବୟସର ପାର୍ଥକ୍ୟ

ସ୍ୱାମୀ-ସ୍ତ୍ରୀଙ୍କ ଭିତରେ
ଅନ୍ତତଃ
ପନ୍ଦରରୁ କୋଡ଼ିଏ ବର୍ଷ ବୟସର ପାର୍ଥକ୍ୟରେ
ସ୍ତ୍ରୀର ଉଚ୍ଛଳ ଜୀବନୀଶକ୍ତି
ପୁରୁଷଠାରେ ସଂକ୍ରାମିତ ହୋଇ
ସମତାରେ
ଉଭୟଙ୍କର ବାର୍ଦ୍ଧକ୍ୟକୁ
ଅନେକାଂଶରେ
ପ୍ରତିରୋଧ କରିଥାଏ,—
ଏବଂ ଜୀବନ, ଉଦ୍ୟମ ଓ ବର୍ଦ୍ଧନରେ
ଉନ୍ନୀତ କରି
ଆନନ୍ଦ, ପ୍ରମୋଦ, ସୁଖ ଓ ଶାନ୍ତିରେ
ଅଧିରୂଢ଼ କରାଇ
ବୀର୍ଯ୍ୟବାନ୍ ସନ୍ତାନର ଅଧିକାରୀ
କରିତୋଳେ ;
ତେଣୁ, ଏହା ଧର୍ମପ୍ରଦ ।୧୦୦।

## ବୟସ—ନୈକଟ୍ୟରେ କ୍ଷୟପ୍ରାବଲ୍ୟ

ତୁମର ଓ ତୁମ ସ୍ୱାମୀଙ୍କ ମଧ୍ୟରେ
ବୟସର ନୈକଟ୍ୟ ଥିଲେ—
ଯେତେବେଳେ ଏପରି ବୟସର ସହିତ ସାକ୍ଷାତ୍ ହେବ,
ଯେଉଁଠାରେ କ୍ଷୟର ପ୍ରାବଲ୍ୟ
ଜୀବନକୁ ପରିଚାଳନା କରୁଅଛି,—
ସେତେବେଳେ ଉଭୟେହିଁ ଉଭୟଙ୍କର ଜୀବନୀଶକ୍ତି ଆକର୍ଷଣ
କରିବାହେତୁ

କ୍ଷୟର ପ୍ରାବଲ୍ୟ
ଏତେ ଅଧିକ ହେବ ଯେ
ମୃତ୍ୟୁକୁ ସ୍ପର୍ଶ କରିବା ଛଡ଼ା
ଅନ୍ୟ ଉପାୟ ରହିବ ନାହିଁ ;
ଆଉ, ଯଦି ଏହି ବୟସ ଭିତରେ
ଏପରି ପାର୍ଥକ୍ୟ ଥାଏ,
ଯେତେବେଳେ ତାଙ୍କର ବୃଦ୍ଧି ଆଉ ବୃଦ୍ଧିକୁ ଆଲିଙ୍ଗନ କରୁନାହିଁ
—ଆଉ ତୁମର ଜୀବନୀଶକ୍ତି ବୃଦ୍ଧିରେ ଉନ୍ନତ,—
ସେତେବେଳେ
ତୁମର ଜୀବନୀଶକ୍ତି ତାଙ୍କଠାରେ ସଂକ୍ରାମିତ ହୋଇ
ତାଙ୍କର କ୍ଷୟକୁ ଅବହେଳା କରି,
ଜୀବନକୁ ସଜୀବ, ସମ ଓ ସୁନ୍ଦରରେ
ସମାସୀନ ରଖି
ତୁମର ଜୀବନ ସାର୍ଥକ କରିବ,—
ଏହା କଣ ଚାହନା ? ।୧୦୧।

## ପାପ

ତାହାକୁହିଁ ପାପ ବୋଲି ଜାଣିବ,
ଯାହା
ତୁମକୁ
ଜୀବନ, ଯଶ ଓ ବୃଦ୍ଧିରୁ
ବଞ୍ଚିତ କରି—
ଅଜ୍ଞତା, ହୀନତା ଓ ଦୁର୍ବଳତାକୁ ନେଇ
ମରଣପଥର
ଯାତ୍ରୀ
କରିତୋଳେ ।୧୦୨।



## ପ୍ରେମରେ ଅଧୀନତାହିଁ ମୁକ୍ତି

ତୁମେ ଯଦି ତୁମର ସ୍ୱାମୀଙ୍କୁ
ପ୍ରକୃତରେ ଭଲପାଇଥାଅ—
ତେବେ ତାଙ୍କର ଅଭାବ
ତୁମକୁ ଅବଶ
ଓ
ତୁମର ପ୍ରାଣକୁ ସ୍ପନ୍ଦନବିହୀନ
କରିତୋଳିବ,—
ତେଣୁ,
ସେ
ତୁମ ନିକଟରେ
ପ୍ରାଣତୁଲ୍ୟ ;—
ତାଙ୍କର ଅଧୀନତାହିଁ
ତୁମର ମୁକ୍ତି ଓ ତୃପ୍ତି
ବୋଲି ମନେହେବ ;
ତେଣୁ,
ପ୍ରେମ ଯାହାକୁ ଅଧୀନ କରିତୋଳିଛି,
ମୁକ୍ତି-ପ୍ରଶ୍ନ
ସେଠାରୁ
ଚିରଦିନ ପାଇଁ ବିଦାୟ ନେଇଛି—
ଏହା ସ୍ଥିର ଜାଣିବ ।୧୦୩।

## ଛଦ୍ମବେଶୀ ପାତିତ୍ୟ

ଯେତେବେଳେ ଦେଖିବ
ତୁମର
ସ୍ୱାମୀଙ୍କ ଛଡ଼ା ଆଉ କାହାକୁ

ଏପରି ଭଲ ଲାଗୁଛି—
ଯାହାକୁ ନେଇ ବ୍ୟାପୃତ ରହିବାକୁ ଇଚ୍ଛାହୁଏ,
ଅଥଚ ତାହା ସହିତ
ତୁମର ସ୍ୱାମୀଙ୍କର କୌଣସି ବିଷୟ
ବା ବ୍ୟାପାରରେ ସଂସ୍ରବ ନାହିଁ—
ବୁଝିବ—
ତୁମର ନିଷ୍ଠା ଚଞ୍ଚଳ ହୋଇଉଠିଛି,
ହୁଏତ
ପାତିତ୍ୟ ମଧ୍ୟ
ଏହାର ଅନ୍ତରାଳରେ
ହାମୁଡ଼ି କରି
ଚୋରପରି ଅଗ୍ରସର ହେଉଅଛି,—
ଏକ୍ଷଣି ସାବଧାନ ହୁଅ ।୧୦୪।

## ସ୍ୱାମୀ-ନିଷ୍ଠା

ନିଷ୍ଠା ମାନେହିଁ ହେଉଛି—
କୌଣସି ଗୋଟିଏ-ବିଷୟ ନେଇ
ତାହାର ଶୁଭ-ମାନସରେ
ସେଥିରେ—ତାହାର ନାନା ରକମରେ
ମନକୁ ବ୍ୟାପୃତ ରଖିବା ;
ତେଣୁ,
ସ୍ୱାମୀପ୍ରତି ନିଷ୍ଠା ମାନେହିଁ ହେଉଛି—
ସ୍ୱାମୀଙ୍କ ଉନ୍ନତିମାନସରେ
ତାଙ୍କର
ସର୍ବ ବିଷୟକୁ—
ଶୁଭ ବା ମଙ୍ଗଳରେ ନିୟନ୍ତ୍ରିତ କରିବା ପାଇଁ
ଶରୀର ଓ ମନରେ ବ୍ୟାପୃତ ରହିବା ।୧୦୫।



## ନିବିଡ଼ ଆସକ୍ତିହିଁ ଚଲା—ବୁଲାର ନିୟନ୍ତ୍ରକ

ଝିଅମାନଙ୍କର ଚରିତ୍ର ଯେପରି ସହଜନମ୍ୟ
ସେପରି
ସେ ଯେତେବେଳେ ତା'ର ଈପ୍‌ସିତରେ
ସର୍ବତୋଭାବେ ଆସକ୍ତ ହୁଏ, ଏପରିଭାବରେ—
ଶରୀର ଓ ମନ
ତାଙ୍କ ଛଡ଼ା ଆଉ-କାହାରିକୁ ବି ଚାହେନା—
ଆଉ, ସେ ସହ୍ୟ ମଧ୍ୟ କରିପାରେନା
କାହାରିକୁ
ଏହିପରିଭାବରେ,—
ଏପରି-କି କୌଣସିପ୍ରକାର ସଙ୍କେତରେ ମଧ୍ୟ ନୁହେଁ,
ସେ ସେତେବେଳେ
ବଡ଼ କଠୋର, ବଡ଼ ଅନମନୀୟ,
ବଡ଼ ନିସ୍ତତ୍ୱପ୍ରବଣ ହୋଇଉଠେ—
ଯେତେ ଦିନ ତା'ର ସେହି ଆସକ୍ତିର ଟାଣ
ସର୍ବତୋଭାବରେ
ତାକୁ ଅଧିକାର କରିଥାଏ ;—
ତୁମେ ଯଦି ଏପରି ଅବସ୍ଥା ଲାଭ କରିଥାଅ,
ତୁମର ଚଲା-ବୁଲାରେ ଆଉ
ଅନ୍ୟର ମୁଖାପେକ୍ଷୀ ହୋଇ ରହିବାକୁ ହେବନାହିଁ
ସେହି ଆସକ୍ତିହିଁ କେଉଁଠି କିପରି ଚାଲିବାକୁ ହେବ,
କି-ରକମ ଧରଣ ଧରିବାକୁ ହେବ,
ଇତ୍ୟାଦି କହିଦେବ,
ଚଲାଇ ନେବ ;
ମୁଁ କହୁଛି
ତୁମେ ଏପରି ବର୍ମ ପିନ୍ଧିଅଛ,

ତୁମକୁ
ଅନ୍ୟ ଆଉ-କିଛି ବି
ସ୍ପର୍ଶ ସୁଦ୍ଧା କରି ପାରିବ ନାହିଁ ।୧୦୬।

## ସ୍ୱାମୀଙ୍କର ବିପଥ—ଗମନରେ ବେଦନାହୀନ ବାଧା

ସ୍ୱାମୀ ଯେଉଁଥିରେ ନଷ୍ଟ ହୁଅନ୍ତି—
ବିଧ୍ୱସ୍ତ ଓ ବିପନ୍ନ ହୁଅନ୍ତି—
ତାହାର ବାଧା ହୁଅ,
କିନ୍ତୁ
ବେଦନା ଓ ବିପଦ ସୃଷ୍ଟି କର ନାହିଁ ;
ତୁମର ଭଲଲାଗେନା ବୋଲି
ତୁମର ମାପକାଠିରେ ମାପି
ସ୍ୱାର୍ଥମଳିନ ଦୋଷଦୃଷ୍ଟି ନେଇ ଦେଖନାହିଁ
ଓ ବିବେଚନା ମଧ୍ୟ କରନାହିଁ,
ବରଂ ବୁଝ,
ଭଲରେ ବିନ୍ୟସ୍ତ କର,
ଦିଆଅ
ଓ
ପାଅ—
ଉତ୍‌ଫୁଲ୍ଲ ହୋଇ
ଉତ୍‌ଫୁଲ୍ଲ ରଖ ।୧୦୭।

## ପତି—ନିୟନ୍ତ୍ରଣରେ

ତୁମେ ଯଦି ବୁଝିଥାଅ,
ତୁମର ସ୍ୱାମୀଙ୍କ ଚାଲିଚଳନ, ଅବସ୍ଥା ଓ ପରିଣତି
ଏପରି ପଥ ନେଇଛି



ଯେଉଁଥିରେ ତାଙ୍କର ସମୂହ କ୍ଷତିର ସମ୍ଭାବନା,
ଅଥଚ
ସେ ସେଥିରେ ଦୃଢ଼ଭାବରେ ଚାଲିଛନ୍ତି,
ଏତେ ସ୍ପର୍ଶାନୁଭବତା (Sensitiveness) ଘଟିଛି ଯେ,
କୌଣସି କଥା ଯଦି ସେଦିଗରେ ଇଙ୍ଗିତ ମଧ୍ୟ କରେ—
ଅତିଷ୍ଠ ହୋଇଉଠନ୍ତି—
ସାବଧାନ, ତାହାର ବାଧା ହୁଅନାହିଁ,
ଆଗ୍ରହ ଓ ଯତ୍ନର ସହିତ ସେଥିରେ ଯୋଗଦେଇ
ଅବସ୍ଥାର ଆଘାତ
ଓ ପ୍ରତିକ୍ରିୟାକୁ ଲକ୍ଷ୍ୟ କରି
ସହାନୁଭୂତି ଓ ବେଦନାର ସହିତ
ଆଳାପ-ଆଲୋଚନାର ମଧ୍ୟ-ଦେଇ
ତାଙ୍କର ବୋଧ ଓ ମୀମାଂସାକୁ ସମ୍ମୁଖରେ ଧରି
ତୁଷ୍ଟି ଓ ସନ୍ତୋଷର ସହିତ
ତାହାଙ୍କୁ ଫେରାଅ,—
ତୁମର ଦକ୍ଷତା, ସହାନୁଭୂତି ଓ ସମବେଦନାରେ
ସେ ଭରପୂର ହୋଇ
ତୁମ ପ୍ରତି ଉଚ୍ଛଳ ହେବେ
ସନ୍ଦେହ ନାହିଁ—
ଶାନ୍ତି ପାଇବ ।୧୦୮।

## ପ୍ରେରଣା ଓ ଅଭୀ ବାକ୍ୟରେ

ତୁମେ ତୁମର ସ୍ୱାମୀଙ୍କ ପଛରେ
ଇଷ୍ଟନିଷ୍ଠା,
ପ୍ରେରଣା,
କର୍ମପ୍ରାଣତା

ଓ
ଅଭୀ ବାକ୍ୟ ନେଇ
ଛିଡ଼ାହୁଅ—
ଅବସନ୍ନତା ତୁମମାନଙ୍କର
କାହାରିକୁ ବି
ହୁମ୍‌କି ଦେଖାଇ ପାରିବ ନାହିଁ ।୧୦୯।

## ସ୍ୱାମୀଙ୍କର ବିରକ୍ତି ଓ କ୍ରୋଧରେ

ତୁମର କୌଣସି ବ୍ୟବହାରରେ
ତୁମର ସ୍ୱାମୀ ଯଦି
ତୁମ ଉପରେ ବିରକ୍ତ, ଦୁଃଖିତ, କ୍ରୁଦ୍ଧ ହୋଇଉଠନ୍ତି
ତୁମେ କଦାପି ତାହାଙ୍କୁ
ସେପରି ଅବସ୍ଥାରେ ପକାଇ ରଖି
ଦୂରେଇ ରୁହ ନା ;
ତାଙ୍କର ଅବସ୍ଥା ପର୍ଯ୍ୟବେକ୍ଷଣ କରି
ତ୍ରୁଟି ସ୍ୱୀକାର କରି
ଦୁଃଖିତ ହୁଅ,
ଆଉ,
ଆଦର, ସହାନୁଭୂତି ଓ ସମର୍ଥନ ଦ୍ୱାରା
ତାହାଙ୍କଠାରେ ଆହୁରି ନିବିଡ଼ ହୁଅ—
ଉଭୟେହିଁ ସୁଖୀ ହେବ ।୧୧୦।

## ସ୍ୱାମୀଙ୍କର ନିୟତ ଅତ୍ୟାଚାର—ପରାୟଣତାରେ

ତୁମର ସ୍ୱାମୀ ଯଦି ତୁମ ପ୍ରତି
ନିୟତ ଅତ୍ୟାଚାର-ପରାୟଣହିଁ ହୁଅନ୍ତି—



ଆଉ, ତୁମର ତାହାଙ୍କୁ
ନମନୀୟ କରିବାର କ୍ଷମତା
ଯଦି ସର୍ବପ୍ରକାରରେ
ବ୍ୟାହତହିଁ ହୋଇଥାଏ,—
ତୁମେ
ମଙ୍ଗଳକାମୀ ହୋଇ
ତାଙ୍କଠାରୁ
ଧୀରେ-ଧୀରେ
ଟିକିଏ-ଟିକିଏ କରି
ଦୂରରେ ରହିବାକୁ
ଅଭ୍ୟାସ କର ;
ଆଉ,
ଏହି ଦୂରରେ ରହି
ତାଙ୍କର ମଙ୍ଗଳ-ଅନୁଷ୍ଠାନରେ
ଏପରିଭାବେ
ବ୍ୟାପୃତ ରୁହ,
ଯେଉଁଥିରେ
ସେ
ପ୍ରତ୍ୟକ୍ଷଭାବରେ
ତାହାର ଫଳର
ଅଧିକାରୀ ହୁଅନ୍ତି—
ଦେଖିବ—
ଶତ ବେଦନାରେ ମଧ୍ୟ
ତୃପ୍ତି
ତୁମକୁ ପରିତ୍ୟାଗ କରିବ ନାହିଁ ।୧୧୧।

## କପଟ ବନ୍ଧୁତ୍ୱରେ

ଯେତେବେଳେ ଦେଖିବ—
ତୁମର ସ୍ୱାମୀଙ୍କର କୌଣସି ବନ୍ଧୁ
ତୁମର ସ୍ୱାମୀଙ୍କ ପ୍ରତି ଉନ୍ମୁଖତା ଦେଖାଇ
ତୁମ ସହିତ ପରିଚିତ ହେବାକୁ ଚାହେ—
ତୁମର ସ୍ତୁତି, ତୁମର ସେବା,
ତୁମର ସହାନୁଭୂତି ହିଁ ତାହାର ଲକ୍ଷ୍ୟ,—
କିମ୍ବା
ତୁମ ସହିତ ମିଶି,
ତୁମର ସ୍ୱାମୀଙ୍କ ସମ୍ବନ୍ଧରେ ଆଲୋଚନା ଓ
ଆଳାପ କରିବାକୁ ବ୍ୟସ୍ତ,
କିନ୍ତୁ ତା'
ତାର ନିଜ ଜଗତରେ ବା ପାରିପାର୍ଶ୍ୱିକରେ ନୁହେଁ—
ବୁଝିବ—
ବନ୍ଧୁ ସ୍ୱାମୀଙ୍କର ହେଲେ ମଧ୍ୟ
ତାହାର ଲକ୍ଷ୍ୟ କେବଳ ତୁମେ,—
ପୁଣି,
ସନ୍ତାନ ସହିତ ଆଳାପ କରି,
ସନ୍ତାନର ଯତ୍ନ-ଶୁଶ୍ରୂଷା କରି,
ତୁମ ନିକଟରେ ତାହାର ପ୍ରଶଂସା କରିବାକୁ,
ଆଳାପ-ଆଲୋଚନା କରିବାକୁ
ଯେତେବେଳେ ଦେଖିବ ବ୍ୟସ୍ତ—
ଲକ୍ଷ୍ୟ ତୁମର ସନ୍ତାନ ନୁହେଁ, ତୁମେ—
ବେଶ୍ ବୁଝିନେବ ;—
ଏହିପରି ନାନାପ୍ରକାରରେହିଁ ହୋଇପାରେ,—



ସାବଧାନ ହୁଅ,
ଦୂରେଇ ରୁହ—
ସଂସ୍ରବରେ ଆସ ନାହିଁ ।୧୧୨।

## ବରଣେ—ଶ୍ରେଷ୍ଠରେ ନିକୃଷ୍ଟତାରେ

ଶ୍ରେଷ୍ଠରେ ବଂଶାନୁକ୍ରମିକତା (heredity) ସତ୍ତ୍ୱେ ବି—
ଏପରି-କି, ବିଦ୍ୟା-ବ୍ୟବହାରରେ ଶ୍ରେଷ୍ଠ ହୋଇ ମଧ୍ୟ
ଯଦି କେହି ହୀନ ଚିନ୍ତା ଓ କର୍ମାନୁଷ୍ଠାନୀ ହୁଏ,
ଆଉ, ତାହା କୌଣସି ଉଚ୍ଚ-ଆଦର୍ଶକୁ
ବହନ ଓ ପ୍ରତିଷ୍ଠା ନ କରି
ସ୍ୱାର୍ଥକୁହିଁ ପରିପୁଷ୍ଟ କରେ,—
ତେବେ, ଏପରି ସ୍ଥଳେ
ସେ ଶ୍ରେଷ୍ଠ ହେଲେ ବି ନିକୃଷ୍ଟ
ବୋଲି ପରିଗଣିତ ହେବ—
ତୁମେ
ବରଣ-ବ୍ୟାପାରରେ ଏହାଠାରୁ ଦୂରେଇ ରୁହ,—
ଏହା ମଧ୍ୟ
ଶ୍ରେଷ୍ଠ ବଂଶାନୁକ୍ରମିକତାକୁ
ଅପଘାତ କରି
ନିକୃଷ୍ଟକୁ ନିମନ୍ତ୍ରଣ କରେ ।୧୧୩।

## ଅନୁଲୋମରେ ପୁଣ୍ୟ—ପ୍ରତିଲୋମରେ ପାପ

ଅନୁଲୋମ—
ଜୀବନ ଓ ବୃଦ୍ଧିକୁ
କ୍ରମୋନ୍ନୟନରେ ଅଧିରୂଢ଼ କରେ ବୋଲି
ତାହା ଧର୍ମ ଓ ପୁଣ୍ୟର ପ୍ରସବିତା ;
ଆଉ, ପ୍ରତିଲୋମ-ସଂସର୍ଗ
ଜାତିର ବଂଶାନୁକ୍ରମିକ ଅର୍ଜିତ ଅଭିଜ୍ଞତା
ଓ
ବ୍ୟକ୍ତିତ୍ୱର ଅପଘାତ ଘଟାଇ—
ହୀନତ୍ୱରେ ସଂବର୍ଦ୍ଧିତ ଓ ପରିଚାଳିତ କରି
ମୂର୍ତ୍ତ କରେ ବୋଲି—
ତାହା
ଅଧର୍ମ, ହୀନତା ଓ ପାପରହିଁ
ଜନନୀ ।୧୧୪।

## ପ୍ରତିଲୋମରେ ପ୍ରତିକାର

ଯଦି ପ୍ରତିଲୋମ-ସଂସର୍ଗ ଘଟିବି ଥାଏ
ତାହାହେଲେ—
ଇଷ୍ଟ, ଆଦର୍ଶ, ଗୁରୁ ବା ମହତ୍‌ଙ୍କଠାରେ
ଭକ୍ତିରେ ଅବନତ ହୋଇ
ତାଙ୍କର ପ୍ରତିଷ୍ଠାରେ
ଏପରିଭାବରେ ଜୀବନକୁ ଉତ୍ସର୍ଗ କର—
ଯେଉଁଥିରେ
ତାଙ୍କର ପ୍ରତିଷ୍ଠା ଛଡ଼ା
ତୁମର ମସ୍ତିଷ୍କରେ ଅନ୍ୟ କୌଣସି ଚିନ୍ତା,—



ବାକ୍ୟ ବା କର୍ମରେ ଅନ୍ୟରକମ ଚଳନ—
କୌଣସିମତେ ସ୍ଥାନ ନ ପାଏ,
ଆଉ,
ପ୍ରତିଲୋମଜ ବୃଦ୍ଧିରୁ
ଯେତେଦୂର ସମ୍ଭବ ଦୂରରେ ରୁହ—
ଦେଖିବ—
ଏ-ଦୋଷ ତୁମକୁ ଓ ଅନ୍ୟକୁ
ଯେପରିଭାବେ ଦୁଷ୍ଟ କରିଥା'ନ୍ତା,
ତାହା ଅନେକାଂଶରେହିଁ
କମିଯିବ ।୧୧୫।

## ସ୍ୱାମୀଙ୍କର ପାତିତ୍ୟରେ ସ୍ତ୍ରୀର ଦାୟିତ୍ୱ

ସ୍ୱାମୀଙ୍କର ଆଦର୍ଶଚ୍ୟୁତିରେହିଁ ସ୍ୱାମୀ
ବାସ୍ତବିକଭାବେ
ପତିତ ହୋଇଥାଆନ୍ତି ;—
ଆଉ,
ସ୍ୱାମୀଙ୍କର ପତିତ ହେବାଠାରୁ
ସ୍ତ୍ରୀର ଅମର୍ଯ୍ୟାଦା
ଆଉ କ'ଣ ହୋଇପାରେ ?
ଏପରି ପାତିତ୍ୟରେ ପତିତ୍ୱର ମଧ୍ୟ
ଅପଳାପ ଘଟିଥାଏ ;—
ଲକ୍ଷ୍ୟରେ ଅଟୁଟ ରହି
ସ୍ୱାମୀଙ୍କୁ
ଲକ୍ଷ୍ୟରେ ତୋଳିଧର ।୧୧୬।

## ସଂସାରର ସେବାରେ

ତୁମେ ତୁମର ସଂସାରରେ
କାହାରି ପ୍ରତି କୌଣସି ବିଦ୍ୱେଷଭାବ ନେଇ
ରୁହ ନାହିଁ—
କାହାରି ବ୍ୟବହାରରେ ଉତ୍ତ୍ୟକ୍ତ ହେଲେ ମଧ୍ୟ
ତାହାର ଅବସ୍ଥା ବୁଝି
ସହାନୁଭୂତିପୂର୍ଣ୍ଣ ପ୍ରିୟ ବ୍ୟବହାର
ଓ ବାକ୍ୟ ଦ୍ୱାରା
ତାହାକୁ ସୁସ୍ଥ କରି ନିୟନ୍ତ୍ରିତ କର ;—
ଭରସାରେ, ପ୍ରେରଣାରେ, ଆଦର ଓ ସେବାରେ,
ଯେଉଁଠାରେ ଯେପରି ପ୍ରୟୋଜନ ସେହିପରି ଭାବେ
ତୁମର ପାରିପାର୍ଶ୍ୱିକଙ୍କୁ
ଉଦ୍‌ବୁଦ୍ଧ ରଖିବାକୁ ଚେଷ୍ଟାକର,—
କେଉଁଠି କିପରି ଚଳିବା ଉଚିତ—
ଅବସ୍ଥା ଦେଖି
ଭାବନା ବା ଚିନ୍ତା କରି
ସ୍ଥିର କରି ଚାଲ—
ଦେଖିବ—
ତୁମଠାରେ ତୁମର ସଂସାର
ଏବଂ
ତୁମର ସଂସାରରେ ତୁମେ
ଉତ୍‌ଫୁଲ୍ଲ ରହିବ ।୧୧୭।



## ସ୍ୱାର୍ଥରେ ବଞ୍ଚନା

ସ୍ୱାମୀଙ୍କୁ ଯଦି ପରିବାର ଓ ପରିଜନଠାରୁ
ଅଲଗା କରି ନିଅ—
ତେବେ—
ସେବା ଓ ସମ୍ବର୍ଦ୍ଧନାରୁ
ମଣିଷ ଯେଉଁ ଉତ୍କର୍ଷ ଲାଭ କରେ,—
ବୋଧ ଓ ଜାଣିବାରେ ଯେ-ତୃପ୍ତି ଓ ମୁକ୍ତି
ଆସିଥାଏ,—
ସେଥିରୁ ବଞ୍ଚିତ ହେବ ;
ମହିମା, ଗରିମା ଓ ପ୍ରତିଷ୍ଠା
ତୁମଠାରୁ ଦୂରକୁ ଅପସରି ଯିବ,
ଉଦ୍‌ବେଗ, ଅତୃପ୍ତି, ଅବସାଦ ଓ ଅବସନ୍ନତା
ତୁମକୁ ଘେରି ପକାଇବ—
ତୁମେ କ'ଣ
ଏପରିଭାବରେ—
ବଞ୍ଚିତ ହେବାକୁ ଚାହ ? ।୧୧୮।

## ସଂସାର ଓ ପାରିପାର୍ଶ୍ୱିକରେ କରଣୀୟ

ତୁମର ପ୍ରଥମ କର୍ତ୍ତବ୍ୟହିଁ ହେଉଛି
ଯେଉଁ ସଂସାରକୁ ଆସିଅଛ,
ସେହି ସଂସାର ଯାହାଙ୍କ ଉପରେ ପ୍ରତିଷ୍ଠିତ,—
ସେବାରେ ତାହାଙ୍କୁ ବା ସେମାନଙ୍କୁ
(ସାଧାରଣତଃ ଶ୍ୱଶୁର ଓ ଶାଶୁଙ୍କୁ)
ଶରୀର ଓ ମନ ଦିଗରୁ
ସୁସ୍ଥ, ସବଳ ଓ ଭରସାଶୀଳ

ଯେପରି ରଖିପାର—
ତାହାହିଁ କରିବା ;—
ଆଉ, ଦ୍ୱିତୀୟତଃ,—ସେମାନଙ୍କୁ,
ଯେଉଁମାନଙ୍କୁ ନେଇ ତୁମେ
ସଂସାରରେ ବାସ କରୁଛ ;
ତୃତୀୟତଃ, ଅବଶ୍ୟ କରଣୀୟ—
ଯେ-ପାରିପାର୍ଶ୍ୱିକ ଭିତରେ
ତୁମର ସଂସାର ବସବାସ କରୁଛି ;
ଯେତେଦୂର ସମ୍ଭବ ଏହା ଉଲ୍ଲଙ୍ଘନ କର ନାହିଁ—
ଯଶସ୍ୱିନୀ ହେବ—
ସୁଖୀ ହେବ ।୧୧୯।

## ସ୍ୱାମୀ—ପ୍ରତିଷ୍ଠାରେ ଗୁରୁଜନ—ସେବା

ସ୍ୱାମୀଙ୍କର ଯଦି ଉନ୍ନତି ବା ପ୍ରତିଷ୍ଠା ଚାହ—
ତେବେ ତୁମର
ଶାଶୁ-ଶ୍ୱଶୁରଙ୍କ ସେବାରୁ
କେବେହେଲେ ବିମୁଖ ହୁଅନା ;
କାରଣ, ସେମାନେ ସେହିମାନେହିଁ,
ଯେଉଁମାନଙ୍କ ନିକଟରୁ
ତୁମର ସ୍ୱାମୀ ଉଦ୍ଭୂତ ହୋଇଛନ୍ତି—
ଆଉ,
ସେହିମାନେହିଁ ତାଙ୍କର ଆଦିମ-ମଙ୍ଗଳକାମୀ,
ଯଦିଓ ଏ-କାମନା ଭିତରେ ମଧ୍ୟ ଭ୍ରାନ୍ତ ଥାଇପାରେ !
ସ୍ୱାମୀ ଯଦି ଭ୍ରାନ୍ତ ହୋଇ
ଏଥିରେ ଅନିଚ୍ଛୁକ ବି ହୁଅନ୍ତି—
ତାହା ଉଲ୍ଲଙ୍ଘନ କରି ସେମାଙ୍କର ସେବା କରିଲେ



ମଙ୍ଗଳହିଁ ହେବ ;
ଶ୍ୱଶୁର ଯଦି ଭ୍ରଷ୍ଟାଚାର-ସମ୍ପନ୍ନ ବି ହୁଅନ୍ତି
ତଥାପି ତାଙ୍କର ସେବାବିମୁଖ ହୁଅ ନାହିଁ,
ବରଂ ସହଚର୍ଯ୍ୟାରେ ବିରତ ରୁହ—
ଦେଖିବ—
ମଙ୍ଗଳକୁହିଁ ଉପଢୌକନ ପାଇବ ।୧୨୦।

## ସ୍ୱାମୀଙ୍କର ଧାତୁ ଓ ଅବସ୍ଥାର ସହିତ ପରିଚୟ

ଦେଖ
ତୁମର ସ୍ୱାମୀ
କୌଣସି ପ୍ରକାରରେ ଯେପରି
ତୁମ ନିକଟରେ ଅପରିଚିତ ନ ଥାଆନ୍ତି—
ଅବସ୍ଥା ଦେଖି, ଭାବି, ବୁଝି—
ତାଙ୍କର ଚରିତ୍ର, ଚାହିଦା ଓ ଧାତୁକୁ
ଅନୁଭବ କର—
ଆଉ, ଯାହା କଲେ ତାଙ୍କର ସର୍ବପ୍ରକାର ମଙ୍ଗଳ ହୁଏ,
ତତ୍‌କରଣେ ଅନାୟାସ ହୁଅ—
ଆଉ, ତାହା ଏପରି ଭାବରେ,
ଯେପରି ତାହା କରି ତୁମେ ମଧ୍ୟ
ତୃପ୍ତ ଓ ସୁଖୀ ହୋଇପାର ;—
ଦେଖିବ—
ପ୍ରାଣ ଓ ପ୍ରଣୟକୁ
ଉପଭୋଗ କରି
ତୃପ୍ତ ହୋଇପାରିବ ।୧୨୧।

## ଲକ୍ଷ୍ମୀ—ବୋହୂ

ତୁମର କୌଣସି କାରଣ ନେଇ
ଯଦି ସଂସାରରେ ଗୃହବିବାଦ ଉପସ୍ଥିତ ହୁଏ—
ତୁମର ସ୍ୱାମୀଙ୍କୁ
ତାହା ସମର୍ଥନ କରିବାକୁ ଦିଅ ନାହିଁ—
ନିଜର ଦକ୍ଷତାକୁ ଖଟେଇ,
ପରିଜନଙ୍କ ଭିତରେ ତୁଷ୍ଟି ଆଣି
ତାହାର ନିରାକରଣ କର,—
ନିମିଷକେ
ଲକ୍ଷ୍ମୀ-ବୋହୂ ହୋଇ ଛିଡ଼ାହେବ—
ସନ୍ଦେହ ନାହିଁ ।୧୨୨।

## ପରିଜନ—ବିଦ୍ରୋହରେ

ଆଉ, ଯଦି ସ୍ୱାମୀଙ୍କ ଭ୍ରାନ୍ତି
ବା ଚରିତ୍ର ଯୋଗୁଁ
ଗୃହବିବାଦ ଆରମ୍ଭ ହୁଏ—
ତେବେ
ସ୍ୱାମୀଙ୍କୁ ସଂଶୋଧନ କରି,
ପରିଜନରେ ତାହାଙ୍କୁ ପ୍ରତିଷ୍ଠା କରି
ଶାନ୍ତିକୁ ଡାକି ଆଣ—
ଧନ୍ୟା ସେହି—
ଯେ ବିଦ୍ରୋହକୁ
ଶାନ୍ତିର ଜଳରେ
ଲିଭାଇ ଦେଇପାରେ ।୧୨୩।



## ଉନ୍ନତିର ପଥରେ

ତୁମେ ଯଦି ଭଲହିଁ ରହିବାକୁ ଚାହ—
ଜ୍ଞାନ, ଶାନ୍ତି ଓ ସମ୍ମାନରେ
ଯଦି ତୁମର ଜୀବନକୁ
ଉନ୍ନତି ପଥରେ ଅତିବାହିତ
କରିବାକୁ ଚାହ—
ତେବେ ତୁମେ
ତୁମର ପୁରୁଷଙ୍କ ନିକଟରେ,
ଏପରିଭାବରେ
ଶ୍ରୀ, ବାକ୍, ଚରିତ୍ର ଓ ସେବା ନେଇ
ଉପସ୍ଥିତ ହୁଅ—
ଯେଉଁଥିରେ ସେ
ଜୀବନ, ଯଶ ଓ ବୃଦ୍ଧିରେ
ଉନ୍ନତ ଓ ଅତୁଟ ହୁଅନ୍ତି ।୧୨୪।

## ଶାଶୁର ଗଞ୍ଜନାରେ

ତୁମର ଶାଶୁ
ଯଦି ଗଞ୍ଜନା-ଦାୟିନୀ ବି ହୋଇଥାଆନ୍ତି—
ତାଙ୍କ ଗଞ୍ଜନାର
ବାଧା ହୁଅ ନାହିଁ,
ଆପତ୍ତି କର ନାହିଁ,
ପ୍ରତ୍ୟୁତ୍ତର କର ନାହିଁ,—
ତାଙ୍କର
ପ୍ରୟୋଜନଗୁଡ଼ିକ ପ୍ରତି
ନଜର ରଖ—

ପୂରଣରେ ଯତ୍ନବତୀ ହୁଅ—
ସ୍ତୁତିବାଦରେ ତାହାଙ୍କୁ ପରିପ୍ଲୁତ କରିତୋଳ,
ସେବା-ବୁଦ୍ଧିକୁ ଅତୁଟ ରଖ
ଓ
ବାସ୍ତବରେ ପରିଣତ କର—
ଜୟ ତୁମର ଅବଶ୍ୟମ୍ଭାବୀ । ୧୨୫ ।

## କେନ୍ଦ୍ରାନୁଗ ସେବାରେ ପ୍ରତିଷ୍ଠା

ତୁମେ ଯେ-ସଂସାରର ବଧୂ ହୋଇଅଛ,
ସେହି ସଂସାରର କେନ୍ଦ୍ର ବା କର୍ତ୍ତା ଯିଏ ବା ଯେଉଁମାନେ
—ସାଧାରଣତଃ ଶ୍ୱଶୁର ଓ ଶାଶୁ—
ସର୍ବାଗ୍ରେ ସେମାନଙ୍କୁ
ତୁମର ସେବାରେ
ଜୀବନ, ଯଶ ଓ ବୃଦ୍ଧିରେ
ପରିପୁଷ୍ଟ ରଖିବାକୁ
ଚେଷ୍ଟା କର—
ଦେଖିବ, ଶାନ୍ତି, ସେବା ଓ ପ୍ରତିଷ୍ଠା
ତୁମକୁ କିପରିଭାବେ
ମହିମମୟୀ କରିତୋଳୁଛି । ୧୨୬ ।

## ଭ୍ରାନ୍ତିରେ ଅକୃତଜ୍ଞତା

କାହାରିକୁ ଯଦି 'ମୋର' ବୋଲି ଭାବି ସୁଖୀ ହୁଅ,
ସ୍ମରଣ ରଖ—
ତୁମର ସେବାର
ପ୍ରଥମ ଅଧିକାରୀ
ସେ ବା ସେମାନେ,



ଯାହାଠାରୁ ତୁମେ ତାଙ୍କୁ ପାଇଅଛ,
ବା ପାଇବା ସମ୍ଭବ ହୋଇଛି ;
ଏଠାରେ ଭ୍ରାନ୍ତି ଘଟିଲେହିଁ
ଅକୃତଜ୍ଞତାର ଗୁପ୍ତ ଛୁରୀ
ତୁମକୁ ନିଃଶେଷ କରିଦେବ
ମନେ ରଖ । ୧୨୭ ।

## ଦରିଦ୍ରତାର ମୋସାହେବ

ଆତ୍ମମ୍ଭରିତା, ଆଳସ୍ୟ, ଅବିଶ୍ୱାସ
ଓ ଅକୃତଜ୍ଞତା—
ଏମାନେ ଦରିଦ୍ରତାର ମୋସାହେବ ;
ଏମାନେ ଥିଲେ
ଦରିଦ୍ରତା
ଖୁସ୍-ମେଜାଜ୍‌ରେ
ବସବାସ କରିପାରେ । ୧୨୮ ।

## ସ୍ୱାମୀଙ୍କର ବୈରୂପ୍ୟରେ

ତୁମର ସ୍ୱାମୀ ଯଦି ତୁମ ପ୍ରତି ଅତୁଷ୍ଟ ହୋଇ
ତୁମଠାରୁ ଦୂରକୁ ଅପସରି ଯାଆନ୍ତି
ଭଲ କରି ଅନୁସନ୍ଧାନ କର, ଭାବ—
ତୁମର ଚରିତ୍ରକୁ
ତାଙ୍କର ସେବା ଓ ସମ୍ବର୍ଦ୍ଧନକ୍ଷମ
କରି ତୋଳିବାକୁ
ଚେଷ୍ଟା କର—
ଯେଉଁଥିରେ ସେ
ତୁଷ୍ଟ ହୁଅନ୍ତି, ପୁଷ୍ଟ ହୁଅନ୍ତି

ଏବଂ
ଗର୍ବ ଅନୁଭବ କରନ୍ତି ;
ଦେଖିବ—
ତୁମର ସ୍ୱାମୀ ତୁମ ପ୍ରତି
କିପରି ଉତ୍‌ଫୁଲ୍ଲ ହୋଇ ଉଠିଛନ୍ତି ।୧୨୯।

## ସ୍ୱାମୀଙ୍କର ବିପଥଗମନରେ

ତୁମର ସ୍ୱାମୀ ଯଦି
ବିପଥଗାମୀହିଁ ହୋଇଥାଆନ୍ତି—
ତାହାଙ୍କୁ ତାଚ୍ଛିଲ୍ୟ କର ନାହିଁ—
ବା ରୂଢ଼ ଭାଷା ବା ବ୍ୟବହାରରେ କିମ୍ବା ଅଯତ୍ନରେ
ତାହାଙ୍କୁ କ୍ଷୁବ୍‌ଧ କରି ତୋଳ ନାହିଁ,
ବରଂ ଅନୁସନ୍ଧାନ କରି
ବୁଝିବାକୁ ଚେଷ୍ଟା କର—
ବାସ୍ତବିକଭାବରେ ସେ କ'ଣ ଚାହାନ୍ତି,
ଆଉ,
କାହାର ଅଭାବରେ ବା ଆସକ୍ତିରେ
ସେ ଏପରି ପଥ ଅବଲମ୍ୱନ କରିଲେ ;
ଆବିଷ୍କାର କର,
ସମ୍ଭବ ହେଲେ
ପ୍ରାଣପଣ କରି ତାହାର ନିରାକରଣରେ
ଯତ୍ନବତୀ ହୁଅ,—
ଆଉ, ଏପରି
ଆଦର, ଯତ୍ନ, ସେବା, ଯୁକ୍ତି ଓ ଆଲୋଚନା କର,
ଯାହା
ତାଙ୍କର ପ୍ରାଣକୁ ସ୍ପର୍ଶକରି



ଏପରିଭାବରେ ଉଦ୍‌ବୁଦ୍ଧ କରିବ
ଯେଉଁଥିରେ ସେ ଏକରକମ ଅଜ୍ଞାତସାରରେ
ତୁମ ପ୍ରତି ମୁଗ୍‌ଧ ହୋଇ
ବିପଥର ପ୍ରୟୋଜନରୁ
ଅପସାରିତ ହୁଅନ୍ତି ।୧୩୦।

## ବ୍ୟୟର ଆଦର୍ଶ

ତୁମେ ପ୍ରୟୋଜନୋପଯୁକ୍ତ ଖରଚ କର—
ଯାହା ନ ହେଲେ ଚଳେ,
ତାହାକୁ ଡାକି ଆଣନାହିଁ ;
ଈଷତ୍ କୃପଣତା
ସ୍ତ୍ରୀଲୋକମାନଙ୍କର
ଗୋଟିଏ ଉତ୍ତମ ଗୁଣ—
କିନ୍ତୁ ଅନ୍ୟାୟ କୃପଣ ହୁଅ ନାହିଁ ;
ତୁମେ ଯାହା ଖରଚ କର,
ସେଥିରୁ
ଅନ୍ୟର ଅସୁବିଧା ନ ଘଟାଇ
କିଛି-କିଛି ବଞ୍ଚାଇବାକୁ ଚେଷ୍ଟା କର,—
ପ୍ରୟୋଜନ ଯେତେବେଳେ
ତୁମର ଶ୍ୱଶୁର ବା ସ୍ୱାମୀଙ୍କର
ଗଳା-ଟିପି ଧରିବ,
ତୁମର ଅଭୟହସ୍ତ ପ୍ରସାରିତ କରି
ଦେଇଦିଅ—
ଦେଖିବ—
ସେ କି ସୁଖ
ସେ କି ତୃପ୍ତି ।୧୩୧।

# ପାରିବାରିକ ଶିକ୍ଷାରେ ନିତ୍ୟପ୍ରୟୋଜନୀୟ

ମୋର ମନେହୁଏ
ସମାଜ ବା ଜାତିକୁ
ଉନ୍ନତି ପଥରେ ଚଳାଇବାକୁ ହେଲେ
ଏପରି ଶିକ୍ଷାର ପ୍ରୟୋଜନ—
ଯେଉଁଥିରେ
ପ୍ରତ୍ୟେକ ପରିବାର ଭିତରେହିଁ
ଗୋଟିଏ ଗବେଷଣାଗାର (Laboratory)
ଗୋଟିଏ ଶିଳ୍ପକୁଟୀର (Industry Cottage)
ଓ ନିତ୍ୟପ୍ରୟୋଜନୀୟ ତରି-ତରକାରୀ ଉତ୍ପାଦନୋପଯୋଗୀ
କୃଷି
ଅନାୟାସରେ ଓ ଅବ୍ୟାହତଭାବରେ ଚାଲିପାରେ,
ଆଉ, ଏ-ଶିକ୍ଷା ପ୍ରତ୍ୟେକ ପରିବାରରେ—
ସ୍ତ୍ରୀ-ପୁରୁଷ-ନିର୍ବିଶେଷରେ ।୧୩୨।

# ଶିକ୍ଷାରେ ବୈଶିଷ୍ଟ୍ୟର ଭିତ୍ତି

ବୈଶିଷ୍ଟ୍ୟ ବଜାୟ ରଖି
ତୁମର ଶିକ୍ଷା
ଯେତେଦୂର ଅଗ୍ରସର ହେଉନା କାହିଁକି—
ତାହାର ଭିତ୍ତିରେ ଯେପରି
ଧର୍ମ କାହାକୁ କହନ୍ତି,
ଆଦର୍ଶ କ'ଣ,
ଶ୍ରେଷ୍ଠ କାହାକୁ କହନ୍ତି
ଶ୍ରେଷ୍ଠକୁ କିଭଳି ଚିହ୍ନିବାକୁ ହୁଏ,
ଶ୍ରେଷ୍ଠକୁ କେମିତିକରି ବରଣ କରିବାକୁ ହୁଏ,



ସତୀତ୍ୱ କାହାକୁ କହନ୍ତି,
ସତୀତ୍ୱ ମଣିଷକୁ କିପରି ଗଢ଼ିତୋଳେ,
ସେବା କ'ଣ, ଶ୍ରଦ୍ଧାଭକ୍ତି କାହାକୁ କହନ୍ତି,
କିପରିଭାବେ ସମ୍ବର୍ଦ୍ଧନା କରିବାକୁ ହୁଏ,
କେଉଁଥିରେ ସୁସନ୍ତାନ ଲାଭ ହୁଏ,
ପାରିବାରିକ ଶାନ୍ତି ରକ୍ଷାକରି—
କିପରି ଉନ୍ନତିକୁ ଡାକି ଆଣି ହୁଏ,
ପତିତ୍ୱକୁ କି ଉପାୟରେ ଚିହ୍ନିବା ସମ୍ଭବ,
ସନ୍ତାନକୁ କିପରି ପାଳନ କରିବାକୁ ହୁଏ,
କିଭାବେ ବା ଶିକ୍ଷା ଦେଲେ
ତାହାର ଭବିଷ୍ୟତ-ଜୀବନ
ଉଜ୍ଜ୍ୱଳତର ହୋଇ ଛିଡ଼ାହେବ,
ସଞ୍ଚୟର ନିୟମ କ'ଣ—
ଅନ୍ୟର କଷ୍ଟ ସୃଷ୍ଟି ନ କରି
କିପରି ଭାବେ ତାହାର ଉନ୍ନତି କରାଯାଏ,
ଇତ୍ୟାଦି
ବିଶେଷ କରି
ଅଭିନିବେଶ-ସହକାରେ
ଚରିତ୍ରଗତ କରିବାକୁ ହେବ—
ଯଦି ଶ୍ରୀ ଓ ମଙ୍ଗଳକୁ ଦାସୀ କରି ରଖିବାକୁ ଚାହ ।୧୩୩।

# ସ୍ୱାମୀଙ୍କର କ୍ଷୁବ୍ଧତାରେ

ତୁମର ଚଳନ ଓ ବ୍ୟବହାର
ଭ୍ରାନ୍ତିରେ ବା ଅଭାବରେ
ଯଦି ତୁମର ସ୍ୱାମୀ
କ୍ଷୁବ୍ଧ ଓ ବେଦନାପ୍ଲୁତ,

ଅବସନ୍ନ ଓ ନିରାଶ ହୋଇଥାଆନ୍ତି—
ବା
ଏପରି-କିଛି ଘଟିଥାଏ
ଯେଉଁଥିରେ ସେ ବିପନ୍ନ ହୋଇପାରନ୍ତି,—
ବୁଝିବାମାତ୍ରେ
ତୁମେ ତୁମର ଅନବଧାନତା, ବେକୁବୀ ଓ ଭ୍ରାନ୍ତିକୁ
ତାଙ୍କ ନିକଟରେ
ବେଦନା, ସହାନୁଭୂତି ଓ ଆଦରର ସହିତ
ଏପରିଭାବେ ମୁକ୍ତ କରିଦେବ—
ଯେଉଁଥିରେ ସେ ତୁମକୁ
ଭଲ କରି ବୁଝି
ନିଃସନ୍ଦେହ ହୋଇ—
ଉତ୍‌ଫୁଲ୍ଲ ହୋଇଉଠନ୍ତି ;—
ଆଉ,
ଯଦି ସେ ବିପନ୍ନ ହୋଇପାରନ୍ତି
ଏପରି କିଛି ଘଟିଥାଏ,
ତୁମର ଭୁଲକୁ ଉଲ୍ଲେଖ କରି,
ଦୋଷଗୁଡ଼ିକୁ ଗୋଟାଇ
ନିଜ ମଥାରେ ନେଇ
ଏପରିଭାବେ
ଅବସ୍ଥାକୁ ନିୟନ୍ତ୍ରିତ କରିବ—
ଯେଉଁଥିରେ ବିପଦ ତାହାଙ୍କୁ ସ୍ପର୍ଶ ବି ନ କରିପାରେ,—
ଆଉ,
ସ୍ପର୍ଶ କରିଥିଲେ ମଧ୍ୟ
ତାହା ଅପସାରିତ ହୋଇଯାଏ
ଏବଂ
ସଙ୍ଗେ-ସଙ୍ଗେ ସେଥିଯୋଗୁଁ ଯେଉଁ କ୍ଷତ ହୋଇଛି



ଅବିଳମ୍ବେ
ତାହା ମଧ୍ୟ ଯେପରି
ନିରାମୟ ହୋଇଉଠେ ;—
ନଜର ରଖ—
ସାବଧାନ ହୁଅ
ଭବିଷ୍ୟତ ପାଇଁ ।୧୩୪।

## ମୂର୍ତ୍ତିମାନ୍ ପାପ

ଯେ-ଆନନ୍ଦ ଅବସନ୍ନତାକୁ ଆମନ୍ତ୍ରଣ କରି
ସ୍ୱାସ୍ଥ୍ୟ ଓ ଜୀବନର ଅପଳାପ ଘଟାଏ,—
ଯେ-କର୍ମ ଭୟ ଓ ଦୁର୍ବଳତାକୁହିଁ ସୃଷ୍ଟି କରେ,—
ଯେ-ସେବା, ଯେ-ଅନୁରକ୍ତି, ଯେ-ସହାନୁଭୂତି
ନିଜକୁ—
ପାରିପାର୍ଶ୍ୱିକକୁ—
ଜ୍ଞାନ, ସମୃଦ୍ଧି ଓ ଶ୍ରେଷ୍ଠତ୍ୱକୁ—
ଅବହେଳା କରି,
ହୀନତ୍ୱରେ ପ୍ରତିଷ୍ଠା କରି,
ଭ୍ରାନ୍ତି ଓ ବିପଦ ସହିତ
ଅମଙ୍ଗଳକୁ ଡାକି ଆଣି
ମରଣ କୋଳରେ ଶୁଆଇବାକୁ ଚାହେ—
ତାହାକୁ ତୁମେ
ମୂର୍ତ୍ତିମାନ୍ ପାପ ବୋଲି ଜାଣିବ ।୧୩୫।

## ଦୋଷ—ପରିହାରରେ

ଚୋରି, ନିନ୍ଦା, ପରଚର୍ଚ୍ଚା,
ଦୋଷ-ଦେବା ଓ ଦୋଷ-ଦେଖା,
ଏଗୁଡ଼ିକୁ ସତର୍କତାର ସହିତ

ଏକ୍ଷଣି ପରିହାର କର ;—
ଏଗୁଡ଼ିକ ଏପରି ଯେ—
ଅତି ଅଳ୍ପ ଅଭ୍ୟାସରେହିଁ
ଭୂତପରି ଚାପି
ଚରିତ୍ରକୁ ନର୍କକୁ ନିଅନ୍ତି ;
ମଣିଷର କେତେ ଯେ ମହତ୍‌ଗୁଣ
ଏମାନଙ୍କର ଆବିର୍ଭାବରେ ଛାରଖାର ହୋଇଯାଏ
ତାହାର ଇୟତ୍ତା ନାହିଁ ;—
ଥରେ ପାଇ ବସିଲେ
ତଡ଼ିଲେ ମଧ୍ୟ—ଯେପରି ଅଜ୍ଞାତସାରରେ
ପୁଣି ଆସି ବସନ୍ତି ;
ଯଦି ନିଜ-ଚେଷ୍ଟାରେ ନ ତଡ଼ି ପାର,
ତେବେ ସଂଶୋଧନର ଇଚ୍ଛା ନେଇ ଧରାପଡ଼—
ସେଥିରେ ଆପାତତଃ ତୁମର
ଟିକିଏ ଅସୁବିଧା ହୋଇପାରେ,
କିନ୍ତୁ ଭବିଷ୍ୟତ
ମଙ୍ଗଳପ୍ରଦହିଁ ହେବ । ୧୩୬ ।

## ମିଥ୍ୟାରେ

ଆଉ-ଗୋଟିଏ ଜାନୁଆର ଅଛି,
ତାହା ପ୍ରାୟ ଛାରପୋକ ପରି—
ସେଇଟି 'ମିଥ୍ୟା କଥା' ;
ଏହା ଥରେ ସ୍ପର୍ଶ କଲେ
ଯଦି ଟିକିଏ ପ୍ରଶ୍ରୟ ପାଏ—
ଝାଙ୍କେ-ଝାଙ୍କେ ବଢ଼ିଯିବ,—
ସେତେବେଳେ ଲୋକେ
ତୁମ ନିକଟକୁ ଆସିବାକୁ ମଧ୍ୟ



ଭୟ ପାଇବେ—
ବିଶ୍ୱାସ କରିବେ ନାହିଁ ;
ଚରିତ୍ରଟି
ଜର୍ଜ୍ଜରିତ ହୋଇ
କଳାଜ୍ୱରର ରୋଗୀ ପରି
ଏକଦମ୍ ସର୍ବନାଶକୁ ଆଲିଙ୍ଗନ କରିବ ;
ଏହାର ଗୋଟିଏ ଉତ୍ତମ ଔଷଧ—
ଏପରି କଥା ଅଭ୍ୟାସ କରିବା,
ଯାହା
ମଣିଷର କୌଣସି ପ୍ରକାରର
ଅମଙ୍ଗଳ ନ ଆଣିପାରେ—
ଅହିତ ନ ଘଟାଇ ପାରେ ;—
ଶେଷରେ ଦେଖିବାକୁ ପାଇବ—
ସତ୍ୟହିଁ ଏତେ ଅଛି ଯେ
ମଣିଷର ଜୀବନଯାପନରେ—
ଅବସ୍ଥାର ସଂଘାତରେ
ମିଥ୍ୟାରେ କୌଣସି ପ୍ରୟୋଜନ ବି ହୁଏ ନା,
ଥରେ ସାଧି ଦେଖ । ୧୩୭ ।

## ଦୁଷ୍ଟ ପତିଭକ୍ତି

ଆଉ ଏକ ପ୍ରକାର ଶଇତାନି ପତିଭକ୍ତି ଅଛି—
ସେ ପରିବାରରେ ଦିଅର, ନଣନ୍ଦ, ଜା, ଶାଶୁ, ଶ୍ୱଶୁର
ଇତ୍ୟାଦିଙ୍କର ଦୋଷ ଗୋଟାଇ ନେଇ,
ସ୍ୱାମୀଙ୍କଠାରେ ଉପ୍ତ କରି,
ତାଙ୍କର ଶରୀର ଓ ମନକୁ ବିଷାକ୍ତ କରି,
ସଂସାରରେ ନିଆଁ ଲଗେଇ ଦିଏ ;—

କିନ୍ତୁ ସେମାନେ ପାରନ୍ତି ନାହିଁ
ଭଲକୁ ଗୋଟେଇ ନେଇ ସ୍ୱାମୀଙ୍କଠାରେ ଉପ୍ତ କରିବାକୁ—
ଧ୍ୱଂସକୁ ଧ୍ୱଂସ କରି ଜୀବନ, ଯଶ ଓ ବୃଦ୍ଧିକୁ
ଅମୃତମୟ କରି ତୋଳିବାକୁ ;—
ସେମାନେ ସ୍ୱାମୀଙ୍କୁ କହନ୍ତି—
ଯାହା ଶୁଣେ ବା ଦେଖେ,
ତୁମ ନିକଟରେ ନ-କହି
ରହି ପାରେ ନା,—
ତୁମ ନିକଟରେ ନ କହିବା ପର୍ଯ୍ୟନ୍ତ
ମନ କିପରି ଅଶାନ୍ତ ହୋଇଥାଏ ;—
ସେମାନେ ସବୁକିଛି ପାରନ୍ତି—
ଦେଖନ୍ତିବି ଦୋଷ, ଭାବନ୍ତିବି ଦୋଷ,
କହନ୍ତିବି ଦୋଷ,
ପାରନ୍ତି ନାହିଁ କେବଳ ଗୁଣର କଥା ଭାବିବାକୁ ;
ଗୁଣକୁ ଖୋଜି ବାହାର କରିବାକୁ,
ଗୁଣକୁ ଗୁଣମୟ କରି ଢାଳିବାକୁ ଅନ୍ୟ ନିକଟରେ ;
ଏହା ବଡ଼ ଭୀଷଣ ପାପ ;
ତୁମେ ଏପରି ସ୍ୱଭାବକୁ ସ୍ପର୍ଶସୁଦ୍ଧା କରନା—
ତାହା ଶରୀରରେ ବି ନୁହେଁ, ମନରେ ବି ନୁହେଁ ;
ଗୁଣକୁ ଚିନ୍ତାକର,
ଖୋଜି ଗୁଣକୁ ବାହାର କରିବାକୁ ଚେଷ୍ଟାକର—
ଦୋଷ ଓ ଦୁଷ୍ଟଠାରୁ ସାବଧାନ ରହି ;
ଆଉ,
ଯେତେଗୁଣ ପାର—
ଗୁଣକୁହିଁ ସମସ୍ତଙ୍କ ଭିତରେ ଖେଳେଇ ଦିଅ,
ସେ ସ୍ୱାମୀହିଁ ହୁଅନ୍ତୁ, ଶ୍ୱଶୁର-ଶାଶୁହିଁ ହୁଅନ୍ତୁ—
ଦିଅର, ନଣନ୍ଦ, ଜା ଓ ପାରିପାର୍ଶ୍ୱିକର ଯେକେହି ହୁଅନ୍ତୁ



ଦେଖିବ—
ଭଗବତୀ ପରି ମଙ୍ଗଳଦାୟିନୀ ବୋଲି
ଅବିରଳଧାରାରେ—
ପୂଜା ତୁମକୁ ସ୍ପର୍ଶ କରିବ ।୧୩୮।

## ବାଗ୍‌ଦାନରେ

ଯଦି କେହି
ନିଜର ଅବସ୍ଥା ବୁଝି,
ଅନ୍ୟଠାରେ ନିଃସଂଶୟ ହୋଇ
କୌଣସି-କିଛି ପାଇଁ ବାକ୍ୟଦାନ କରେ—
ତାକୁହିଁ
ସେ ଯେ-ବିଷୟ ପାଇଁ ବାକ୍ୟଦାନ କରିଅଛି—
ତଦ୍‌ବିଷୟରେ ବାଗ୍‌ଦତ୍ତ ବା ବାଗ୍‌ଦତ୍ତା
ବୋଲି ଅଭିହିତ କରାଯାଏ ;—
ତୁମେ ଯଦି ତୁମର ଅବସ୍ଥା ଓ·ସାମର୍ଥ୍ୟ ବୁଝି
କୌଣସି ପୁରୁଷର ସର୍ବବିଷୟରେ ନିଃସଂଶୟ ହୋଇ
ତୁମକୁ ଦାନ କରିବା ପାଇଁ
ବାକ୍ୟଦାନ କରିଥାଅ—
ତାହାହେଲେ ତୁମେ ବାଗ୍‌ଦତ୍ତା ହେଲ ;
ଏହି ଦାନହିଁ ତୁମର ପ୍ରକୃତ ବିବାହ,
ଯାହାଙ୍କୁ ଦାନ କରିଲ
ସେ ଗ୍ରହଣ କରନ୍ତୁ
ବା ନ କରନ୍ତୁ ;
ଆଉ, ଯଦି ସେ ଗ୍ରହଣ ନ-ବି କରନ୍ତି,
ତାହା ହେଲେବି
ଅନ୍ୟକୁ ପୁନରାୟ ବାଗ୍‌ଦାନ କରି ପାରନା,
ଆଉ, ଏହା କରିଲେ

ଧର୍ମ ଦିଗ ଦେଇ
ତୁମେ ପତିତା ହେବ—

ତେଣୁ,
ସର୍ବବିଷୟରେ ନିଃସଂଶୟ ନ ହୋଇ
କୌଣସି ପୁରୁଷଠାରେ
ତୁମେ ବାଗ୍‌ଦାନ କରିବ ନାହିଁ ;—
ଆଉ, ଯଦି କରିବି ଥାଅ—
ଯଦି ପାର,—ଫେର ନାହିଁ—
ଫେରିଲେ, ଦୁର୍ବଳତାକୁ ଅବଲମ୍ବନ କରି
ପାତକ
ଆଜୀବନ
ତୁମର ପଶ୍ଚାଦ୍ଧାବନ କରିପାରେ,
ହିସାବ କରି ଚାଲ । ୧୩୯ ।

## ବର-ମନୋନୟନରେ ଉପଯୁକ୍ତତା

ନାରୀ ଯେତେବେଳେ ଗର୍ଭଧାରଣକ୍ଷମ ହୁଏ,
ସେତେବେଳେହିଁ ପ୍ରକୃତି ତାହାକୁ
ପୁରୁଷ-ମନୋନୟନର କ୍ଷମତାରେ
ଅଧିରୂଢ଼ କରିତୋଳେ ;—
ଆଉ,
ନାରୀ ଯଦି ବରକୁ ସ୍ୱେଚ୍ଛାମତେ
ମନୋନୟନ କରିବାକୁ ଚାହେ—
ସେତେବେଳେହିଁ କେବଳ ସେ ତାହା ପାରେ ;
ନତୁବା
ପିତାମାତା ସର୍ବତୋଭାବରେ ଶ୍ରେଷ୍ଠ ଦେଖି
ତାହାଙ୍କୁ ବରଣ କରିବେ
ସେମାନଙ୍କର କନ୍ୟା ପାଇଁ—



ସେହିଁ କନ୍ୟାର ବର ବୋଲି
ପରିଗଣିତ ହେବେ—
ଏହାହିଁ ଶାସ୍ତ୍ରର ନୀତି । ୧୪୦ ।

## ଅମନୋନୀତ ହୀନପାତ୍ରସ୍ଥତାରେ

ରଜଃସ୍ୱଳା କନ୍ୟାର ଅମତରେ
ବା ଅମନୋୟନରେ, କିମ୍ବା ବଳବାଧ୍ୟ କରି
ଯଦି ତାହାକୁ ହୀନପାତ୍ରସ୍ଥ କରାହୁଏ—
ତାହା ଅନ୍ୟାୟ ଓ ଅଧର୍ମ ;—
ତେଣୁ, ଶାସ୍ତ୍ରରେ ଅଛି—
"ଦତ୍ତାମପି ହରେତ୍ କନ୍ୟାଂ
ଶ୍ରେୟାଂ ଶ୍ଚେଦ୍ ବର ଆବ୍ରଜେତ୍" ।
ତୁମେ ଯଦି ନିଜେ କୌଣସି ପୁରୁଷକୁ ବାଗ୍‌ଦାନ୍
ବା ବରଣ କରି ନ ଥାଅ—
ବା ବରଣ—ବ୍ୟାପାରରେ ତୁମର ଅଭିମତ
ନ ରହି ଥାଏ—
ଏପରି ଅବସ୍ଥାରେ—
ତୁମର ପିତାମାତା କିମ୍ବା
ଗୁରୁଜନମାନଙ୍କୁ
କୁହ,
ବୁଝାଅ,—
ନିବୃତ୍ତ ହୁଅ । ୧୪୧ ।

## ନୀତି କାହାରିକୁ ବି ବାଧ୍ୟକରେ ନାହିଁ

ସୁନୀତି ବା ସୁନିୟମ
କାହାରିକୁ ହେଲେ ଜବରଦସ୍ତ କରି

ଅନୁସରଣ କରାଇବାକୁ ଚାହେ ନା ;—
କିନ୍ତୁ ଯେ ମଙ୍ଗଳ ଚାହେ,
ସେ ଯଦି ଅନୁସରଣ କରେ—
ମଙ୍ଗଳ ତାହାକୁ—
ନନ୍ଦିତ କରିବ—ସନ୍ଦେହ ନାହିଁ । ୧୪୨ ।

## ସ୍ୱାମୀଙ୍କଠାରେ ନାରାୟଣଙ୍କର ଆବିର୍ଭାବ

ଯେ-ସଂସାରରେ
ସ୍ତ୍ରୀ ସ୍ୱାମୀଙ୍କୁ
ଆତ୍ମସେବାମୁଖୀ କରେ
ସେ ମୃତ୍ୟୁର ସହଯାତ୍ରୀ ;—
ଆଉ, ଯେ-ସ୍ତ୍ରୀ ସ୍ୱାମୀଙ୍କୁ
ଆଦର୍ଶରେ ଅନୁପ୍ରାଣିତ କରି
ବିଶ୍ୱସେବାରେ ତତ୍ପର କରିତୋଳେ,
ତାର ସ୍ୱାମୀଙ୍କଠାରେ
ନାରାୟଣଙ୍କର ଆବିର୍ଭାବ ହୁଏ । ୧୪୩ ।

## ପ୍ରେରଣାରେ ସ୍ତ୍ରୀ

ନଜର ରଖ,
ତୁମର ସ୍ୱାମୀ ଯେପରି ତୁମଠାରେ
ସୁସ୍ଥ, ସ୍ୱସ୍ଥ ଓ ପ୍ରେରଣାପୁଷ୍ଟ ରହି ପାରନ୍ତି,
କିନ୍ତୁ ତୁମଠାରେ ମୂଢ଼ ଓ ସମାହିତ ନ ହୁଅନ୍ତି,—
ତୁମର ତୁଷ୍ଟି, ପୁଷ୍ଟି ଯେପରି
ତାଙ୍କର ଲକ୍ଷଣୀୟ ନ ହୁଏ,
ବରଂ ତୁମର ପ୍ରେରଣାରେ
ସେ ଯେପରି ଆଦର୍ଶରେ ଉଦ୍ଦାମ ହୋଇ



ବିଶ୍ୱସେବାରେ ନିରତ ରହି ପାରନ୍ତି ;
ଆଉ, ଏଇଟି ଯେପରି ତୁମର
ତୃପ୍ତି, ତୁଷ୍ଟି, ସୁଖ ଓ ଗର୍ବର
ଆରାଧନା ବୋଲି
ହୃଦୟରେ ସ୍ଥାନ ପାଏ—
ମହିମମୟୀ ଓ ସୁଖୀ ହେବ
ସନ୍ଦେହ ନାହିଁ । ୧୪୪ ।

## ବିବର୍ଦ୍ଧନରେ ପାଇବା

ପୁରୁଷ ସ୍ୱଭାବତଃ ନାରୀପ୍ରତି
ଆକୃଷ୍ଟ ଥାଏ—
ତେଣୁ ନାରୀର ସ୍ୱଭାବ
ପୁରଷଠାରେ ପ୍ରତିଫଳିତ
ଓ
ପ୍ରଜ୍ୱଳିତ ହୋଇ
ପୁରୁଷର ବୈଶିଷ୍ଟ୍ୟକୁ ଉଦ୍ଦୀପ୍ତ କରେ ;
ଆଉ, ନାରୀ
ତାହାର ବିବର୍ଦ୍ଧନରେ
ଅନେକ ଗୁଣରେ
ପୁରୁଷ ନିକଟରେ
ତାହାହିଁ ପାଇଥାଏ । ୧୪୫ ।

## ନାରୀ—ଜନନରେ ଓ ସେବାରେ

ତୁମର ସ୍ୱାମୀ ଯେପରି ହୁଅନ୍ତୁ ନା କାହିଁକି,—
ଯଦି ତାଙ୍କର ଉଚ୍ଚ-ବଂଶାନୁକ୍ରମିକତା ଥାଏ—
ତୁମେ ତାହାଙ୍କୁ ଯେପରିଭାବେ

ଉଦ୍ଦୀପ୍ତ ଓ ଆନତ କରିତୋଳିବ,
ଠିକ୍ ଜାଣ—
ଅବିକଳ ତାହାହିଁ—
ସନ୍ତାନରୂପେ ପାଇବ ;
ଆଉ, ଏହା ମଧ୍ୟ ଠିକ୍,
ତୁମ ସ୍ୱାମୀ-ସ୍ତ୍ରୀଙ୍କର
ଭାବ, ବାକ୍ୟ ଓ ଆଚାର-ବ୍ୟବହାର
ଭୂମିଷ୍ଠ ସନ୍ତାନର
ଶିକ୍ଷା ଓ ଚରିତ୍ରର ମୂଳଭିତ୍ତି ।୧୪୬।

## ସ୍ୱାମୀ–ବିଦ୍ୱେଷରେ ସନ୍ତାନର ହୀନତ୍ୱ

ତୁମେ ଯଦି ତୁମର ପୁରୁଷ ପ୍ରତି (ସ୍ୱାମୀଙ୍କ ପ୍ରତି)
ବିଦ୍ୱେଷଭାବାପନ୍ନ, ବିରକ୍ତ, ଈର୍ଷ୍ୟାପରାୟଣ
ଓ ଦୋଷଦୃଷ୍ଟି ସମ୍ପନ୍ନ ଥାଅ,—
କିମ୍ବା ତାଙ୍କଠାରେ ଅନିଚ୍ଛା ବା ଅପ୍ରବୃତ୍ତି ଥାଏ,—
ସାବଧାନ !
ତାଙ୍କୁ ଗ୍ରହଣ କର ନହିଁ,—
କାରଣ,
ଏହା ଫଳରେ
ଅଳ୍ପାୟୁ, ମୂଢ଼ମସ୍ତିଷ୍କ, ଅସ୍ଥିର,
କ୍ଷୀଣମତି, ରୋଗସଙ୍କୁଳ, ଘୃଣ୍ୟ ସନ୍ତାନହିଁ
ଭୂମିଷ୍ଠ ହେବ—
ଅବଶୋଷ ଓ ଉଦ୍‌ବେଗରେ
ତୁମର ଜୀବନକୁ ଅତିବାହିତ କରିବାର ପଥ
ପରିଷ୍କାର କର ନାହିଁ ।୧୪୭।



## ସୁସନ୍ତାନ-ଜନନରେ

ତୁମର ନିଷ୍ଠା, ଅନୁରକ୍ତି, ଭାବ ଓ ଭକ୍ତିରେ
ଅନୁରଞ୍ଜିତ ହୋଇ
ତୁମର ସ୍ୱାମୀଙ୍କୁ
ସତ୍ ଓ ସୁସ୍ଥଭାବରେ ଉଦ୍ଦୀପ୍ତ କରି
ଯେତେବେଳେ ତୁମଠାରେ ଆନତ କରାଇବ—
ତାହାହିଁ ହେଉଛି ପ୍ରକୃଷ୍ଟ ଲକ୍ଷଣ
ଯେ ତୁମେ
ସତ୍, ସୁସ୍ଥ ଓ ଦୀପ୍ତିମାନ୍ ସନ୍ତାନର
ଜନନୀ ହେବ—
ସନ୍ଦେହ ନାହିଁ ;—
ଶାସ୍ତ୍ରରେ ସୁସନ୍ତାନଲାଭାର୍ଥ
ଯାଗ, ଯଜ୍ଞ, କ୍ରିୟା-କର୍ମାଦିର
ଉଦ୍ଦେଶ୍ୟ ମଧ୍ୟ ଏହି ।୧୪୮।

## ଅଭିଗମନରେ—ଶ୍ରଦ୍ଧା ଓ ସଜ୍ଜା

ସ୍ୱାମୀଙ୍କ ନିକଟକୁ ସୁସଜ୍ଜିତ ହୋଇ,
ସୁ-ଭାବ ଓ ଚିନ୍ତାପରାୟଣ ହୋଇ,
ଶ୍ରଦ୍ଧା ଓ ଅଭିନିବେଶ-ସହକାରେ
ତାଙ୍କର ଅଭିଗମନ କରିବାର ରୀତିହିଁ
କହିଦେବ
ସ୍ୱାମୀ କିପରିଭାବରେ ଉଦ୍ଦୀପ୍ତ
ଓ ତୁମଠାରେ ଆନତ ହେଲେ
ସୁସନ୍ତାନ-ଲାଭ ଘଟିଥାଏ ;—
ଆଉ, ଏହା
ସୁପ୍ରଜନନର
ଗୋଟିଏ ପ୍ରଧାନ ଧାରା ।୧୪୯।

## ଜୀବନ–ନିୟନ୍ତ୍ରଣରେ ଜନନୀ ଓ ଶୈଶବ–ଶିକ୍ଷା

ପୁଅକୁ ଶତ ଶିକ୍ଷା, ଶତ ଶାସନରେ—
କେବେହେଲେ ଉପଯୁକ୍ତ ମଣିଷ କରାଯିବ ନାହିଁ,
ଯାଇପାରେ ନା ;—
ମା ଯଦି ତାହାର ଜୀବନର ମୂଳଭିତ୍ତିଗୁଡ଼ିକୁ
ଉପଯୁକ୍ତରୂପେ ଅଟୁଟ କରି
ବିନ୍ୟସ୍ତ କରି ନ ଦିଏ ;
ତୁମେ ତୁମର ଶିଶୁକୁ ଯଦି ମଣିଷ କରିବାକୁ ଚାହ,
ତାହାର ଦୋଷ ଗୁଡ଼ିକୁ
ଉପଯୁକ୍ତରୂପେ ନିୟନ୍ତ୍ରିତ କର ;
ପାଞ୍ଚରୁ ଦଶ ବର୍ଷ ମଧ୍ୟରେ
ଯାହା କରିଦେବ ତୁମର ଶିଶୁକୁ—
ତାହାହିଁ ତାହାର ସମସ୍ତ ଜୀବନକୁ
ନିୟନ୍ତ୍ରିତ କରିବ—
ନିଶ୍ଚୟ ଜାଣ ।୧୫୦।

## ନାରୀହିଁ ଶିକ୍ଷାର ଭିତ୍ତି

ଭୁଲିବ ନି—
ମଣିଷର—ସାଧାରଣତଃ ପୁଅ ଝିଅମାନେ ସେମାନଙ୍କର ଶିକ୍ଷା
ମା'ର ବୋଧ, ବାକ୍ୟ, ଚଳନ, ଚରିତ୍ର
ଓ ଦକ୍ଷତାରୁହିଁ ପାଇଥାଆନ୍ତି ;—
ତୁମମାନଙ୍କର ଏହିଗୁଡ଼ିକ ଯେତେହିଁ
ପୁଷ୍ଟ ଓ ପଟୁ ହେବ,



ମଣିଷର—ଅନ୍ତତଃ ପୁଅଝିଅମାନଙ୍କର
ଶିକ୍ଷାର ଭିତ୍ତି
ସେତେହିଁ ଦୃଢ଼ ହେବ ;
ହିସାବ କରି ଚାଲ—
ପଶ୍ଚାତରେ ପସ୍ତାଇବାକୁ ହେବ ନାହିଁ ।୧୫୧।

## ଶିଶୁର ଭବିଷ୍ୟତ–ବିଧାନରେ

ପିଲାମାନଙ୍କର ବୋଧର ସୀମା
ମାଆର ଯଦି ନଖଦର୍ପଣରେ ନ ଥାଏ—
କ'ଣ ସେ ପସନ୍ଦ କରେ,
କିପରି-କଥାରେ ଭୟ କରେ,
ଆତଙ୍କିତ ହୁଏ କିପରି ଭାବେ—
କିପରି ଭାବେ ତା'ଭିତରେ ସନ୍ଦେହ
ବା ବିଶ୍ୱାସ ସୃଷ୍ଟି କରାଯାଇପାରେ,
ଇତ୍ୟାଦି ପ୍ରୟୋଜନାନୁସାରେ
ପ୍ରୟୋଗ କରିବା ହୋଇ ଉଠେନା,—
ଆଉ, ବୋଧର ମାପକାଠି ହାତରେ ଥିଲେ
ଅତି ସହଜରେହିଁ
ଏ ସମସ୍ତ ସମ୍ଭବ ହୋଇ—
ଶିଶୁ ବା ପିଲାକୁ
ଭବିଷ୍ୟତ ବିପଦ ହାତରୁ
ଅନେକ ସହଜରେହିଁ ରକ୍ଷା କରାଯାଏ ;—
ତୁମେ ତୁମର ସନ୍ତାନକୁ
ସବୁ ସମୟରେ
ନଜରରେ ଓ ହିସାବରେ ରଖ ।୧୫୨।

## ଦୃଷ୍ଟାନ୍ତର ଫଳବତ୍ତା

ପୂଅଝିଅମାନଙ୍କ ସମ୍ମୁଖରେ
ଏପରି କିଛି ତୋଳିଧର ନା—
ଯାହା ବର୍ଦ୍ଧିତ ହୋଇ
ତାର ପରବର୍ତ୍ତୀ ଜୀବନରେ
ନର୍କର ଜୟଗାନ କରେ ।୧୫୩।

## ମାଆର ଶାସନ

ତୁମର ସନ୍ତାନ-ସନ୍ତତିଙ୍କୁ ଅଯଥା ତିରସ୍କାର କରି
ବା ଶାସନ କରି
ସଂରକ୍ଷଣର ପଥ କଣ୍ଟକାକୀର୍ଣ୍ଣ କରି ତୋଳନାହିଁ ;—
ଶାସନ ଯେତେହିଁ ଅଳ୍ପ କାରଣରେ ବା ଅଯଥାରେ କରିବ,
ଶାସନ-ସହନୀୟତା ତାହାର ସେତେହିଁ ବୃଦ୍ଧି ପାଇବ,—
ଫଳରେ—
ଶାସନ ତାହାକୁ ଆଉ ସଂଯତ କରି ପାରିବ ନାହିଁ ;
ଏଥିରେ ତାହାର ଭବିଷ୍ୟତ-ଜୀବନ
ଅସଂଯତ, ଦୁଃଖ-ଦାରିଦ୍ର୍ୟମୟ, ଘୃଣିତ, ତମସାଚ୍ଛନ୍ନ
ହୋଇ ଉଠିବାକୁ କିଛି ବି ଲାଗିବ ନାହିଁ ;—
ସହଜରେ ଶାସନ କର ନା—
ବରଂ ବୋଧକୁ ଜାଗ୍ରତ କରି ଦେବାକୁ ପ୍ରୟାସ କର,
ତାହାହେଲେ ବରଂ ଶିଶୁ
ଜ୍ଞାନରେ ସମୃଦ୍ଧ ହେବାର ପଥ ପାଇବ,
ଉନ୍ନତିରେ ମୁକ୍ତ ହେବ ;—
ଆଉ, ଶାସନ ଯଦି ନିତାନ୍ତ କରିବାକୁ ହୁଏ,
ଏପରି ସମୟରେ ଶାସନ କର—



ଯେତେବେଳେ ଅନ୍ୟ ପ୍ରକାରରେ ନିୟନ୍ତ୍ରିତ କରିବାର—
ଆଉ ସମୟ ନାହିଁ ବିବେଚନା କର
—ଏଭଳି ଜୀବନମୃତ୍ୟୁ-ସନ୍ଧିକ୍ଷଣରେ ;
ଦେଖିବ, ତୁମର ଶିଶୁ କିପରିଭାବରେ
ଉନ୍ନତି, ଉଦ୍ୟମ, ସାହସ ଓ ଭରସାରେ
ଅଙ୍କୁରିତ ହୋଇ ଉଠୁଛି ।୧୫୪।

## ଶ୍ରେଷ୍ଠର ବହୁ ଉତ୍ପାଦନରେ

ଆଦର୍ଶପରାୟଣ ପୁରୁଷ ହିଁ
ବହୁବିବାହର ଉପଯୁକ୍ତ ;
କାରଣ, ଆଦର୍ଶରେ ଅନୁପ୍ରାଣତା
ଶକ୍ତି, ଜ୍ଞାନ ଓ ସେବାରେ
ବହୁକୁ ପୂରଣ କରିପାରେ ;—
ଆଉ, ସ୍ତ୍ରୀମାନଙ୍କର ପ୍ରକୃତି
ଶକ୍ତିକୁ ଆଲିଙ୍ଗନ କରିବା ;
ଦୁର୍ବଳଠାରେ ଏକାଧିପତ୍ୟ କରିବା ଅପେକ୍ଷା
ଶକ୍ତିମାନ୍‌ର ଦାସୀ ହେବାକୁ
ଶ୍ରେୟଃ ମନେକରନ୍ତି—
ଆଉ, ଏଇଟି ନାରୀର
ପ୍ରଧାନ ବୈଶିଷ୍ଟ୍ୟରୁ ଗୋଟିଏ ;
ଆଉ,
ଯଦି ସମାଜର ଉନ୍ନତି ଦରକାର—
ତେବେ ବି
ଯଦ୍ଦ୍ୱାରା
ସବଳର ବହୁ ଉତ୍ପତ୍ତି ହୁଏ,
ତାହାହିଁ କରିବା ଶ୍ରେଷ୍ଠ ଏବଂ ଶ୍ରେୟଃ ।୧୫୫।

## ପ୍ରଜନନରେ—ନାରୀ ଓ ପୁରୁଷର ବୈଶିଷ୍ଟ୍ୟ

ଧାତୁ ବା temperament ହେଉଛି,
ବୈଧାନିକ ବୈଶିଷ୍ଟ୍ୟ
(Characteristic of the system)
ଯାହା ଅନେକ ପରିମାଣରେ
ମଣିଷର ବୋଧ, ଚିନ୍ତା, ଚରିତ୍ର
ଓ ଚଳନକୁ ନିୟନ୍ତ୍ରିତ କରେ ;
ତେଣୁ, ପୁରୁଷର ବୈଶିଷ୍ଟ୍ୟ
ଜୀବନକୁ ଉପ୍ତ କରିବା—
ନାରୀ ସେଠାରେ ଧାରଣ କରି ମୂର୍ତ୍ତ କରେ
ଓ ବୃଦ୍ଧିରେ ନିୟୋଗ କରେ,—
ଆଉ, ଏହା ସାଧାରଣତଃ
ଏକକାଳୀନ ଏକକକୁ ;—
ପୁରୁଷ ଉକ୍ତ ସମୟରେ ବହୁକୁ ଉପ୍ତ କରିପାରେ,
ତେଣୁ
ନାରୀର ବୈଶିଷ୍ଟ୍ୟ ଏକଗାମିନୀ ହେବା—
ଆଉ, ଏହା ତାହାର
ସୁସ୍ଥ ମନର ସମ୍ପଦ,—
ପୁରୁଷ କିନ୍ତୁ ସ୍ୱଭାବତଃହିଁ
ବହୁଗମନ-ପ୍ରବଣତା ନେଇ
ଜୀବନଧାରଣ କରେ ;—
ତେଣୁ—
ତୁମର ସ୍ୱାମୀ
ଆଦର୍ଶରେ, ଚରିତ୍ରରେ, ଜ୍ଞାନରେ ଓ ସେବାରେ
ଉଚ୍ଛଳ ରହି ମଧ୍ୟ—
ଯଦି ବହୁଭାର୍ଯ୍ୟା ପରାୟଣ ହୁଅନ୍ତି
ଆଉ, ତା' ଯଦି ତୁମ ସ୍ୱାମୀଙ୍କ ପକ୍ଷରେ
ଅମଙ୍ଗଳପ୍ରଦ ନ ହୁଏ,



ଦୁଃଖିତ ହୁଅ ନା,
ଈର୍ଷ୍ୟାନ୍ୱିତ ହୁଅ ନା—
ବରଂ
ଭଲପାଅ, ଯତ୍ନ ନିଅ—
ଦେଖିବ—ତୁମ ପ୍ରତି ତୁମର ସ୍ୱାମୀ
ଆହୁରି ତୁମେ—ପ୍ରବଳ ହୋଇ ଉଠିଛନ୍ତି
—ଚିନ୍ତା କର ନା ।୧୫୬।

## ପ୍ରକୃତ ପ୍ରେମରେ ପ୍ରେୟ'ର ପ୍ରିୟରେ ପ୍ରୀତି

ଆଉ ଏହା ମଧ୍ୟ ଠିକ୍ ଯେ—
ତୁମେ ଯଦି ତୁମର ସ୍ୱାମୀଙ୍କୁ
ପ୍ରକୃତରେ ଭଲପାଇ ଥାଅ—
ତେବେ ସେ ଯଦି ତୁମ ପରି
ଅନ୍ୟ କାହାକୁ ବି ଭଲପାଆନ୍ତି—
ତୁମର ଭଲପାଇବା ଯଦି
ସ୍ୱାର୍ଥ-ମଳିନ ହୋଇ ନଥାଏ—
ତେବେ ତ ନିଶ୍ଚିତ
ଓ ସହଜଭାବରେ ହିଁ—
ସେ ତୁମର ଆଦର ଓ ଯତ୍ନର ହେବ—
ଏହା କଣ ସମୀଚୀନ ନୁହେଁ ? ।୧୫୭।

## ପତିପ୍ରେମର କଷ୍ଟି—ପଥର

ସପତ୍ନୀ-ବିଦ୍ୱେଷ
ସ୍ୱାମୀଠାରେ ସ୍ୱାର୍ଥାନ୍ଧତାକୁହିଁ
ଦେଖାଇ ଦିଏ ;
ସପତ୍ନୀ-ପ୍ରେମହିଁ
ସ୍ୱାମୀ-ପ୍ରେମର ସାଧାରଣତଃ ଉଜ୍ଜ୍ୱଳ ସାକ୍ଷ୍ୟ
—ନିଶ୍ଚୟ ଜାଣ ।୧୫୮।

## ପ୍ରିୟ ପ୍ରତି ସମସ୍ୱାର୍ଥସମ୍ପନ୍ନାରେ

ଯିଏ ତୁମ ଜୀବନର ଉସ—
ଯିଏ ତୁମର ସ୍ୱାର୍ଥ,—
ଯାହାଙ୍କୁ ତୃପ୍ତ କରି, ପୁଷ୍ଟ କରି,
ଜୀବନ, ଯଶ ଓ ବୃଦ୍ଧିରେ ପ୍ରତିଷ୍ଠା କରି
ତୁମେ ତୁମକୁ
ସାର୍ଥକ ମନେକର,—
ସ୍ୱାମୀ ଭାବି ତୁମେ ଧନ୍ୟା ହୋଇଛ,—
ଯେଉଁଠାରେ ତୁମର ଏପରି ମାନସିକ ଆକୂତି—
ଏପରି ବ୍ୟକ୍ତିର ଯଦି
ତୁମ ପରି ଆଉ-କେହି
ପ୍ରିୟ ଥାଏ,—
ଆଉ, ସେ-ପ୍ରିୟ ଯଦି ସର୍ବତୋଭାବେ
ସମସ୍ୱାର୍ଥ ସମ୍ପନ୍ନା ତୁମର ସାହାଯ୍ୟକାରିଣୀ ହୁଏ,
ତୁମେ ତାହାକୁ କଣ କରିବ ?—
ପକାଇ ଦେବ, ନା ଗ୍ରହଣ କରିବ ?
ଈର୍ଷ୍ୟା କରିବ, ନା ବୁକୁରେ ଟାଣି ନେବ ?
—ବୁଝି ଦେଖ,
ବିପଥରେ ଯାଇ
ପ୍ରେମ ଓ ନିଷ୍ଠାର ଅପଳାପ ଘଟାଅ ନାହିଁ ।୧୫୯।

## ସ୍ୱାର୍ଥାନ୍ଧତାରେ ସପତ୍ନୀ—ବିଦ୍ୱେଷ

ପିତାର ଯଦି ବହୁ କନ୍ୟା ଥାଏ
ତାଙ୍କଠାରେ କନ୍ୟାର ସ୍ୱାର୍ଥ ନିବଦ୍ଧ ଥିଲେ
ଭଗିନୀ-ବିଦ୍ୱେଷ ମୂର୍ତ୍ତିମାନ୍ ହୁଏ,—
ସେହିପରି—



କୌଣସି ପତିର ଯଦି ବହୁଭାର୍ଯ୍ୟା ଥାଏ,
ତାଙ୍କଠାରେ ସ୍ୱାର୍ଥାନ୍ଧ ଆସକ୍ତିହିଁ—
ସପତ୍ନୀ-ବିଦ୍ୱେଷ ମୂର୍ତ୍ତ କରିତୋଳେ ।୧୬୦।

## ଗର୍ଭିଣୀର—ଗର୍ଭଚର୍ଯ୍ୟାରେ

ଯାହାକୁ ଗର୍ଭରେ ସ୍ଥାନ ଦେଇଅଛ—
ମଣିଷରେ ମୂର୍ତ୍ତି କରିବ ଯାହାକୁ—
ଗର୍ଭାରମ୍ଭଠାରୁ ତାହାର
ପରିଚର୍ଯ୍ୟା କରିବାକୁ ଭୁଲ ନାହିଁ—
ଏହି ପରିଚର୍ଯ୍ୟା ପ୍ରଥମତଃ ମାନସିକ,
ଦ୍ୱିତୀୟତଃ ଶାରୀରିକ ;
ତୁମର ମନକୁ ଯେତେହିଁ ନିର୍ଭୀକ ଓ
ସତ୍-ରେ ପ୍ରଫୁଲ୍ଲ ରଖି ପାରିବ,
ତୁମର ଗର୍ଭସ୍ଥ ସନ୍ତାନ ମଧ୍ୟ
ତାହାହିଁ ଉପଭୋଗ କରିବ—
ଶରୀରକୁ
ସ୍ୱାସ୍ଥ୍ୟରେ, କର୍ମପଟୁତାରେ ଓ ପରିଚ୍ଛନ୍ନତାରେ
ଯେତେହିଁ ସୁନ୍ଦର ରଖି ପାରିବ,
ତୁମର ଗର୍ଭସ୍ଥ ସନ୍ତାନ
ତାହାହିଁ ଉପଭୋଗ କରିବ—
ବୁଝି ଚଳିବ ।୧୬୧।

## ସୂତିକା—ଗୃହର ବୈଶିଷ୍ଟ୍ୟ

ନଜର ରଖ—
ସୂତିକା-ଘରଟି ଯେପରି
ରୋଗବିହୀନ, ପରିଶୁଦ୍ଧ-ବାୟୁପୂର୍ଣ୍ଣ,
ଉପଯୁକ୍ତ, ତାପସଂଯୁକ୍ତ, ପରିଚ୍ଛନ୍ନ
ଓ ଶୃଙ୍ଖଳାହିଁ ହୁଏ ;

ସୂତିକାଗାରଟି ଯେପରି ତାହାର
ଏହି କେତୋଟି ବୈଶିଷ୍ଟ୍ୟରୁ
କୌଣସିମତେ ବଞ୍ଚିତ ନ ହୁଏ—
ଶିଶୁ ଓ ପ୍ରସୂତି—
ଏଥିରେ ଉଭୟଙ୍କରହିଁ ମଙ୍ଗଳ ;
ତେଣୁ, ପରିବାର-ପରିଜନ ମଧ୍ୟ
କଷ୍ଟ ଦୁଶ୍ଚିନ୍ତା ହାତରୁ—
ଏଥିରେ ବେଶିଭାଗ ନିଷ୍କୃତିହିଁ ପାଇବେ ।୧୬୨।

## ଦୁଷ୍ଟ ସୂତିକା—ଗୃହର ବିପଦ

ରୋଗବିଷପୂର୍ଣ୍ଣ, ସନ୍ତସନ୍ତିଆ,
ଅଧିକ ଆଲୋକମୟ,
ଆଉ, ଶୀତଳବାୟୁପୂର୍ଣ୍ଣ ସୂତିକାଗାର
ଶିଶୁ ଓ ପ୍ରସୂତିର
ଏପରି ବିକୃତି ଘଟାଇପାରେ—
ଯାହା ହୁଏତ ଜୀବନରେ ମଧ୍ୟ ସଂଶୋଧନ
ହେବା ଦୁଷ୍କର ;
ପୁଣି କହେ—
ସୂତିକା-ଗୃହକୁ ତାହାର ବିଶେଷତ୍ୱରୁ
ବଞ୍ଚିତ କର ନାହିଁ ।୧୬୩।

## ଶିକ୍ଷା ଓ ଚରିତ୍ରବିଧାନରେ ଭକ୍ତି

ସନ୍ତାନ ସମ୍ମୁଖରେ ଏପରି କିଛି କର ନାହିଁ,
ଯେଉଁଥିରେ ତାହାର
ଭକ୍ତି ବା ତୁମପ୍ରତି ଟାଣର
କୌଣସି ପ୍ରକାର ଅପଲାପ ଘଟେ ;—



ଟାଣର ଅପଳାପରେ ତୁମର ବି କଷ୍ଟ,
ତାହାର ମଧ୍ୟ ସମୂହ ବିପଦ ;
ତେଣୁ, ତାହାର ଧାତୁ, ଚରିତ୍ର ଓ ଅବସ୍ଥା
ଯେପରି ତୁମଠାରେ ସବୁ ସମୟରେ ଜାଗରୂକ ଥାଏ ;
କୌଣସି କିଛି ଶିକ୍ଷା ଦେବାକୁ ହେଲେ—
ବେଶ୍ କରି ବୁଝି,
ପ୍ରୟୋଜନ ଓ ଅବସ୍ଥାରେ ନଜର ରଖି,
ଭାବ ଓ ଭାବର ଗତିର ପ୍ରତିକ୍ରିୟା ସମୟରେ
ଯଦି ବୋଧ ଓ ମୀମାଂସାକୁ
ଆଣି ଦେଇପାର—
ଆଦର ଓ ସହାନୁଭୂତି ନେଇ,—
ଦେଖିବ ଶିକ୍ଷା ତାହାର
ଚରିତ୍ରକୁ ସହଜରେହିଁ
ସ୍ପର୍ଶ କରିଅଛି ।୧୬୪।

## ରୋଗଚର୍ଯ୍ୟାରେ ଗଛ—ଲତା

ସାଧାରଣତଃ ତୁମର ପାରିପାର୍ଶ୍ୱିକ ଗଛ-ଲତା
ବା ଅନ୍ୟ କିଛି—
ତାହା ମଣିଷର କି ପ୍ରୟୋଜନରେ ଲାଗିପାରେ
କି କି ଗୁଣ ତାହାର,
କି ପ୍ରୟୋଜନରେ କିପରିଭାବେ
ବ୍ୟବହାର କରିବାକୁ ହୁଏ,
ଇତ୍ୟାଦି ନଖଦର୍ପଣରେ ରଖିଦିଅ—
ବିପଦରେ ସାହାଯ୍ୟ ପାଇବ—
ହୁଏତ ଅଳ୍ପରେ—
ବୈଦ୍ୟ ବା ଡାକ୍ତର ଖୋଜି
ହଇରାଣ ହେବାକୁ ହେବ ନାହିଁ ;
ବ୍ରାହ୍ମମୁହୂର୍ତ୍ତରେ ଇଷ୍ଟଙ୍କୁ ସ୍ମରଣ କରି

ତାଙ୍କର କଥା, ତାଙ୍କର ଇଚ୍ଛା,
ତାଙ୍କର ଚଳନ ଓ ଚାହିଦା
ଇତ୍ୟାଦି ଚିନ୍ତା କରି—
ଶଯ୍ୟାତ୍ୟାଗ କର—
ପରେ ପ୍ରାତଃକାଳୀନ ସାଂସାରିକ କାର୍ଯ୍ୟକର୍ମ
ଶେଷ କରି,
ପ୍ରାତଃକାଳୀନ ପ୍ରୟୋଜନର ଉପକରଣ
ଯଥାଯଥଭାବେ ସଂଗ୍ରହ କରି,
ପୂର୍ବଦିଗରେ ଆନନ୍ଦ-ଆରକ୍ତିମ ସୂର୍ଯ୍ୟକୁ
ଅବଲୋକନର ସହିତ—
ଗୁରୁଜନଙ୍କୁ ଅଭିବାଦନ କର,
ସନ୍ତାନସନ୍ତତିମାନଙ୍କୁ
ଯଥାଯଥ ଉତ୍‌ଫୁଲ୍ଲତାର ସହିତ—
ସ୍ନେହସମ୍ଭାଷଣ ଦ୍ୱାରା
ପ୍ରତ୍ୟେକଙ୍କର ସ୍ୱାସ୍ଥ୍ୟର ଖବର ନେବାକୁ ଭୁଲ ନାହିଁ,
ଏହା ଅଭ୍ୟାସରେ
ଏପରି କରି ନେବାକୁ ଚେଷ୍ଟା କର—
ଯେପରି ପ୍ରତ୍ୟେକଙ୍କ ମୁହଁ ଦେଖିହିଁ
ଯଥାସମ୍ଭବ ଅଳ୍ପକଥାର ଭିତର-ଦେଇ
ସ୍ୱାସ୍ଥ୍ୟ ଓ ପ୍ରୟୋଜନର ଖବର
ଅନାୟାସରେ
ସଂଗ୍ରହ କରିପାର ;—
ଆଉ, ଏହାହିଁ ଯେପରି ତୁମର
ରନ୍ଧନ-ବ୍ୟାପାରକୁ
ପରିଚାଳିତ କରେ ;
ଅର୍ଥାତ୍, ପ୍ରତ୍ୟେକଙ୍କର ସ୍ୱାସ୍ଥ୍ୟାନୁପାତିକ ଆହାର୍ଯ୍ୟ



ଯେପରି ପ୍ରତ୍ୟେକ ପଆନ୍ତି—
ଦେଖିବ, ଏପରି କରିଲେ
ତୁମର ପରିବାର
ରୋଗସଙ୍କୁଳ ହୋଇ—
ତୁମକୁ ଦୁର୍ଦ୍ଦଶା ଓ ଦୁରବସ୍ଥାରେ
ବିଧ୍ୱସ୍ତ କରିବ ନାହିଁ ।୧୬୫।

## ଧର୍ମରେ ଅର୍ଥ, କାମ ଓ ମୋକ୍ଷ

ତୁମର ଅନୁରକ୍ତି ଓ ସାଧନା
ଧର୍ମକୁ ଆଲିଙ୍ଗନ କରି
ତୁମର ବାସ୍ତବ ଜଗତରେ ଯେତେବେଳେ
ସଂକ୍ରାମିତ ହେବ—
ଅର୍ଥ ସେତେବେଳେ ଅର୍ଥ ନେଇ—
ତୁମକୁ ଐଶ୍ୱର୍ଯ୍ୟରେ ଅଧିଷ୍ଠିତ କରି
ଯାହା-କିଛି କାମ୍ୟ ଥିଲା ତାହାର ସମାଧାନରେ—
ମୋକ୍ଷ ବା ମୁକ୍ତିରେ ଅଟଳାୟତନ ସୃଷ୍ଟି କରି
ସେବା ଓ ପ୍ରତିଷ୍ଠାର ସହିତ
ତୁମକୁ ଅଟଳ କରି ରଖିବ ;
ତେଣୁ
ଧର୍ମକୁ ତାଚ୍ଛିଲ୍ୟ କରିବ ନାହିଁ—
ଆଉ, ଧର୍ମ ପ୍ରକୃତ ହେଲେହିଁ
ତାହାର ଅନୁଚର—
ଅର୍ଥ, କାମ ଓ ମୋକ୍ଷ—
ଜାଜ୍ୱଲ୍ୟମାନ ହୋଇ ଛିଡ଼ାହେବ ;—
ଆଉ, ପ୍ରକୃତ ଧର୍ମର
ନିଦର୍ଶନ ହେଉଛି ଏହି ।୧୬୬।

## ବିଧବାର ଆଦର୍ଶ

ବିଧବାର ଆଦର୍ଶ—
ଇଷ୍ଟ ବା ଗୁରୁଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ
ଅନ୍ତରରେ ସ୍ୱାମୀଙ୍କୁ ଅଟୁଟ ରଖି,
ବ୍ରହ୍ମଚର୍ଯ୍ୟପରାୟଣା ହୋଇ,
ଉପଯୁକ୍ତ ସେବାରେ—
ପାରିପାର୍ଶ୍ୱିକ ଓ ଜଗତରେ
ଇଷ୍ଟପ୍ରତିଷ୍ଠା କରି
ନନ୍ଦିତ ହୋଇ
ଗତ ସ୍ୱାମୀଙ୍କ ଆତ୍ମାକୁ ନନ୍ଦିତ କରିବା । ୧୬୭ ।

## ବାଲବୈଧବ୍ୟରେ

ଯଦି ତୁମେ ବିଧବା ହୋଇଥାଅ—
ତୁମର ମସ୍ତିଷ୍କରେ—
ଗତ ସ୍ୱାମୀଙ୍କୁ ଲକ୍ଷ୍ୟ କରି ଯଦି
କୌଣସି ପ୍ରକାରର ଆସକ୍ତି, ଉଦ୍‌ବେଗ ଓ ଆକାଙ୍‌କ୍ଷା
ଆଦୌ ନ ଥାଏ,—
ଆଉ, ସେ-ସ୍ୱାମୀଙ୍କୁ ଯଦି ତୁମେ
ସ୍ୱେଚ୍ଛାରେ ବରଣ କରି ନ ଥାଅ,
ଏବଂ
ତାଙ୍କର ସ୍ମାରକ ସନ୍ତାନ-ସନ୍ତତି ଯଦି
ନ ରହିଥାଏ,—
ଏବଂ ତୁମର ଯଦି ମନରେ ପୁରୁଷାକାଙ୍‌କ୍ଷା ଜାଗି
ତୁମକୁ ଚଞ୍ଚଳ ଓ ଉଦ୍‌ବେଳ କରିତୋଳେ,
ସର୍ବବିଷୟରେ ଶ୍ରେଷ୍ଠ, ଆଦର୍ଶବାନ୍ କୌଣସି ପୁରୁଷକୁ
ତୁମେ ଅନାୟାସରେ ବରଣ କରି
ତୁମର ସ୍ଥିତି ଓ ଉତ୍କର୍ଷକୁ ତାଙ୍କ ସହିତ



ନିବନ୍ଧ କରି
ତାଙ୍କ ସହିତ ଆଦର୍ଶରେ ସାର୍ଥକ ହୋଇପାର ;
ଏଥିରେ ତୁମେ ପାତିତ୍ୟକୁ ଏଡ଼ାଇ
ପବିତ୍ରତାକୁ ନେଇ
ଅସ୍ଖଳିତ ଜୀବନ
ଯାପନ କରିପାରିବ । ୧୬୮ ।

## ଆସ୍ଥା ଓ ବିଶ୍ୱାସର ସ୍ଥଳ

ଯାହାଙ୍କଠାରେ ତୁମର ଜୀବନଠାରୁ ମରଣ ପର୍ଯ୍ୟନ୍ତ
ଯାହା-କିଛି ସବୁ ନ୍ୟସ୍ତ କରିଅଛ—
ଯାହାଙ୍କୁ ତୁମର
ପ୍ରାଣନ, ବ୍ୟାପନ ଓ ବର୍ଦ୍ଧନର
ଧାରକ ବୋଲି ଜାଣ,
ଯାହା ବିଦିତ ବେଦ—
କେବଳ ତାହାହିଁ ବା ସେହିଁ
ତୁମର ସର୍ବାନ୍ତକରଣରେ ବିଶ୍ୱାସର ସ୍ଥଳ ;—
ତାହାଛଡ଼ା ଅନ୍ୟ-କିଛି ବା କାହାରିଠାରେ
କୌଣସି ପ୍ରକାରରେ ରଞ୍ଜିତ ନ ହୋଇ
ନିରପେକ୍ଷ ରହି
ଯେ-ଅବସ୍ଥା ତୁମ ସମ୍ମୁଖରେ ଯେପରି ହୋଇ ଛିଡ଼ାହେବ
ତୁମର ବୋଧ ଓ ବିବେଚନାର ସହିତ
ଅଭିନିବେଶ ସହକାରେ—
ଅନୁଧାବନ କରି
ଯେପରି ବୁଝିବ—
ତତ୍‌ପ୍ରତି ତୁମର ଆସ୍ଥା ଓ ବ୍ୟବହାରକୁ ମଧ୍ୟ
ସେହିପରି କରିନିଅ—
ଦୁନିଆରେ କମ୍‌ହିଁ ଠକିବ । ୧୬୯ ।

## ପଦସ୍ଖଳନ

ତୁମେ ଯଦି ସ୍ଖଳିତପଦ ହୋଇ ବି ଥାଅ,—
ଭ୍ରଷ୍ଟତା ଯଦି ତୁମକୁ
ଆକ୍ରମଣ କରିବି ଥାଏ,—
ଭୟ ନାହିଁ !—
ତୁମର କରିବାର ଢେର ଅଛି—
ଇଷ୍ଟନିଷ୍ଠାରେ ପ୍ରତୁଳ ହୁଅ—
ସେବା ଓ ସମ୍ବର୍ଦ୍ଧନାରେ
ତୁମର ପାରିପାର୍ଶ୍ୱିକ ଜଗତକୁ
ତୁମର ଇଷ୍ଟଙ୍କଠାରେ ଅନୁରକ୍ତ କରିତୋଳ,
ଭ୍ରାନ୍ତିର ଠୁସି ପିନ୍ଧି ଯିଏ ବିପଥରେ ଚାଲିଛି,
ଧର,
ଫେରାଅ ତାହାକୁ—
କାନରେ ଅମୃତର ମନ୍ତ୍ର ଢାଳିଦିଅ ;—
ଉଦ୍‌ବୁଦ୍ଧ କରିତୋଳ,—
ଏହାହିଁ ହେଲା—
ଭଗବାନଙ୍କର ଆଶୀର୍ବାଦ ଆହ୍ୱାନ କରିବାର
ପ୍ରକୃଷ୍ଟ ଉପାୟ ;—
ଆଉ, ଯଦି ଏଥିରେ ମଧ୍ୟ—
ତୁମର ନିମ୍ନପୁରୁଷାନୁରକ୍ତି ବାଧା ଘଟାଏ,
ତେବେ
ଏପରି ଜଣେ ପୁରୁଷକୁ ଅବଲମ୍ବନ କର
ଯିଏ ସର୍ବବିଷୟରେ ତୁମଠାରୁ ଶ୍ରେଷ୍ଠ ;—
ଆଉ, ତାଙ୍କର ସେବା ଓ ସାହଚର୍ଯ୍ୟରେ ତୁମେ,
ଯାହା କଥିତ ହୋଇଅଛି,
କେବଳ ତାହାରି ଅନୁସରଣ କର—

ଠୁସି—ଘୋଡ଼ାର ଚକ୍ଷୁର ଆଚ୍ଛାଦନ ।



ଉତ୍କୃଷ୍ଟ ନ ହେଲେବି
ନିକୃଷ୍ଟ ହେବ ନାହିଁ,
ଘୃଣିତ ହେବ ନାହିଁ,
ପରମାର୍ଥରେବି ସାର୍ଥକ ହୋଇପାର
ଏଥିରେ ସନ୍ଦେହ କଅଣ ? ।୧୭୦।

## ଅକୃତଜ୍ଞତା ଓ ପ୍ରାୟଶ୍ଚିତ୍ତ

ଅକୃତଜ୍ଞ ହୁଅ ନାହିଁ,
ଅକୃତଜ୍ଞତା ମଣିଷର ଗୋଟିଏ ପରମ ଦୋଷ—
ଆଉ, ପାତକ ଭିତରେ ଏହା
ମହାପାତକ ବୋଲି ଗଣ୍ୟ ;—
ପ୍ରାୟ କୌଣସି ଦୋଷ ଏହାକୁ ଅବଲମ୍ବନ ନ କରି
ଆସି ପାରେ ନାହିଁ ;—
ଏହି ଅକୃତଜ୍ଞତାକୁ ଯଦି ପ୍ରଶ୍ରୟ ଦିଅ
ଯାହା-କିଛି ସମସ୍ତହିଁ ହରାଇବ !
ଅକୃତଜ୍ଞତା ହେଉଛି ତାହା—
କୌଣସି ମଣିଷଠାରୁ ତୁମେ ଯାହା ପାଇଅଛ,—
ଯାହା ଅମଙ୍ଗଳକୁ ପ୍ରତିରୋଧ କରି
ତୁମକୁ ସ୍ୱସ୍ତିରେ ତୋଳି ଧରିଅଛି—
ତାହା ଅସ୍ୱୀକାର କରି ବା ଭୁଲି ଯାଇ
ବିନୀତ ଓ ବାଧ୍ୟ ରହି
ତାଙ୍କର ପ୍ରତିଷ୍ଠା ନ କରି
ନିଶ୍ଚେଷ୍ଟ ରହିବା,—
ଅପଳାପ, ଅପ୍ରଶଂସା ବା ଅପଭ୍ରଂଶ ଘଟାଇ
ତାହାଙ୍କୁ ଅମଙ୍ଗଳରେ ବିପନ୍ନ ଓ ବିଧ୍ୱସ୍ତ କରିବା—
ସାବଧାନ ହୁଅ !

ପ୍ରଶ୍ରୟ ଦିଅ ନାହିଁ ;—
ହୋଇଥିଲେ ପ୍ରାୟଶ୍ଚିତ୍ତ କର,
ଆଉ,
'ପ୍ରାୟଶ୍ଚିତ୍ତ' ମାନେହିଁ ହେଉଛି—
ମନରେ ବା ଚିତ୍ତରେ ଗମନ କରି,
କାରଣ ଆବିଷ୍କାର କରି,
ତାହାର ଏହିପରି ଅପନୋଦନ କରିବ
ଯେ
ସେ ଚରିତ୍ରରୁ
ଚିରଦିନ ପାଇଁ
ବିଦାୟ ଗ୍ରହଣ କରେ ।୧୭୧।

## ନୃତ୍ୟଗୀତରେ ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟ

ସଙ୍ଗୀତ ପରି
ସହଜ ଚିତ୍ତବିନୋଦନକାରୀ
ପ୍ରାଣାୟାମ
କମ୍‌ହିଁ ଦେଖିବାକୁ ମିଳେ,—
ପୁଣି
ନୃତ୍ୟ ପରି
ଉତ୍‌ଫୁଲ୍ଲକାରୀ ବ୍ୟାୟାମ ମଧ୍ୟ
ବିରଳ ;
ତେଣୁ, ସଦ୍‌ଭାବର ଉଦ୍ଦୀପନା କରେ
ଏପରି ନୃତ୍ୟଗୀତ
ସ୍ତ୍ରୀ ଓ ପୁରୁଷ ଉଭୟଙ୍କୁହିଁ
ଜୀବନରେ
ସହଜ ଓ ସୁନ୍ଦର କରିତୋଳେ ।୧୭୨।



## ସତୀତ୍ୱ

ଯିଏ ସ୍ୱାମୀଙ୍କ ଜୀବନ, ଯଶ ଓ ବୃଦ୍ଧିକୁ
ଉନ୍ନତି ପଥରେ ଉଚ୍ଛଳ କରି—
ସମ୍ବର୍ଦ୍ଧନା, ସହାନୁଭୂତି, ପାରିପାର୍ଶ୍ୱିକରେ ପ୍ରତିଷ୍ଠା,
ସେବା, ଶୁଶ୍ରୂଷା, ସାହାଯ୍ୟ ଓ ସାମର୍ଥ୍ୟରେ
ଅବିଚଳିତ ରଖି,
ନିଜର ଜୀବନ, ଯଶ ଓ ବୃଦ୍ଧିକୁ ଅଟୁଟ କରି,—
ବ୍ୟଷ୍ଟି ଓ ସମଷ୍ଟିରେ ପ୍ରତିଷ୍ଠାଲାଭ କରନ୍ତି—
ସତୀତ୍ୱ ତାଙ୍କଠାରେ ସାର୍ଥକ ;—
ଯଦି ନାରୀଜନ୍ମହିଁ ଲାଭ କରିଅଛ,
ସତୀତ୍ୱକୁ ଆଲିଙ୍ଗନ କରି
ସାର୍ଥକ ହୁଅ,
ଜୀବ ଓ ଜଗତ୍‌କୁ
ସାର୍ଥକ କରିତୋଳ ।୧୭୩।

## ସ୍ୱାମୀ

ଯଦି ତୁମେ ତୁମର ପୁରୁଷକୁ
ତୁମର ଅସ୍ତିତ୍ୱ ପରି
ଅନୁଭବ କରିପାର,
ଆଉ, ତାହା କରିଲେ—
ବସ୍ତୁତଃ ତୁମର ଚରିତ୍ର ଭିତର-ଦେଇ
ଚାଲି-ଚଳନ, ଭାବ-ଭାଷା ଇତ୍ୟାଦିର ଅଭିବ୍ୟକ୍ତି
ଯଦି ଘୋଷଣା କରେ—
ସେ ତୁମର ଅସ୍ତିତ୍ୱ—
ଜାଣିବ 'ସ୍ୱାମୀ'-ସମ୍ବୋଧନ
ସେତେବେଳେହିଁ
ତୁମର ଜୟଯୁକ୍ତ ହେବ ।୧୭୪।

## ଅହଙ୍କାରର କ୍ଷେତ୍ର

ତୁମର ଅହଂକୁ ସେବାଭାବରେ
ଆପ୍ଲୁତ କରି ରଖ—
ଆଉ, ଯେତେବେଳେ କୌଣସି ସତ୍—
ଅର୍ଥାତ୍
ଯାହା ତୁମର ଓ ତୁମର ପାରିପାର୍ଶ୍ୱିକର
ଜୀବନ, ଯଶ ଓ ବୃଦ୍ଧିର ଅନୁକୂଳ—
ପ୍ରତିକୂଳକୁ ପରାଭୂତ କରି
ତାହାର ପ୍ରତିଷ୍ଠା କରିବାକୁ ହେଲେ,
ଅହଂକୁ ଚାଳନା କରିପାର—
କିନ୍ତୁ
କାହାରି ଅହଂକୁ ଛୋଟ ବା ତାଚ୍ଛିଲ୍ୟ
କରି ନୁହେଁ,
ବରଂ ତେଜ, ସମ୍ମାନ ଓ ସମର୍ଥନର ସହିତ—
ଏହା ବେଶ୍ କରି ସ୍ମରଣ ରଖ,—
ନତୁବା
ଅହଂକାରୀ ବୋଲି
ପ୍ରତିଷ୍ଠାରୁ
ବିଚ୍ୟୁତିଲାଭ କରିବ ।୧୭୫।

## ଦରିଦ୍ରତାର ଦାରିଦ୍ର୍ୟ

ତୁମେ ଅର୍ଥରେ ବା ଐଶ୍ୱର୍ଯ୍ୟରେ
ଦରିଦ୍ର ହୋଇପାର,
କିନ୍ତୁ ସେ-ଦାରିଦ୍ର୍ୟ ଯେପରି ତୁମର ଚରିତ୍ରରେ
ହୀନତା, ଦୈନ୍ୟ ଓ ଦୁଷ୍ଟି ଆଣି



ନ ପାରେ—
ଦେଖିବ,
ତୁମର ଦରିଦ୍ରତା
ଦରିଦ୍ର ହୋଇଯିବ ।୧୭୬।

## ନିତ୍ୟକର୍ମରେ ଶ୍ରମଶିକ୍ଷ

ପୁଣି କହେ—
ତୁମର ଶ୍ରମଶିକ୍ଷ ଯେପରି ତୁମର
ପାରିପାର୍ଶ୍ୱିକର
ପ୍ରୟୋଜନ ପୂରଣ କରାଇ
ତୁମକୁ ଅର୍ଥରେ ଓ ସମ୍ପଦରେ
ସଚ୍ଛଳ କରିତୋଳେ,
ଶ୍ରମଶିକ୍ଷର ସେବା ନ କରି
ଲକ୍ଷ୍ମୀଙ୍କ ଆଶୀର୍ବାଦରୁ
ବଞ୍ଚିତ ହୁଅ ନାହିଁ ;
ଏହା ଯେପରି ତୁମର
ନୈମିତ୍ତିକ ବ୍ରତ ହୁଏ,
ମନେରଖିବ—
ଭୁଲିବ ନାହିଁ ।୧୭୭।

## ଉପହାର—ଗ୍ରହଣରେ—ସତର୍କତା

ମା, ବାପ, ସ୍ୱାମୀ, ଶ୍ୱଶୁର, ଶାଶୁ, ଆଦର୍ଶ, ଗୁରୁଜନ
ଓ ନିଜର ଭାଇଭଉଣୀ ଛଡ଼ା—
କେହି ଯଦି ଭଲପାଇ ତୁମକୁ
କୌଣସି ପ୍ରକାରର ଦାନ ବା ଉପହାର
ଦେବାକୁ ଚାହେ,

ତାହା କଦାପି ଗ୍ରହଣ କର ନାହିଁ—
ଏପରି-କି ବିଶେଷଭାବେ ଅନୁରୁଦ୍ଧ ହୋଇଲେ ମଧ୍ୟ ନୁହେଁ ;—
ଯଦି ଏକାନ୍ତ ନେବାକୁ ହୁଏ—
ବାପ, ସ୍ୱାମୀ, ଶ୍ୱଶୁରଙ୍କ ହାତ ଦେଇ
ଅନୁରୋଧକାରୀର ଉପହାର ନିଅ ;
କାରଣ,
ଏହି ଦାନ ଭିତର ଦେଇ
ଅନେକ୍ ଦୁଷ୍ଟମନ ତୁମକୁ ସ୍ପର୍ଶ କରିପାରେ,—
ତାହା ଫଳରେ ;
ଯାହା ତୁମେ କେବେ ବି ଭାବିନାହଁ,
ତାହା ଘଟିବାକୁ—
ହୁଏତ ଏତେଟିକେ ବି
କାଳବିଳମ୍ବ ଘଟିବ ନାହିଁ—
ସାବଧାନ ହୁଅ ।୧୭୮।

## ଜୀବନର ଧର୍ମ ଓ ସହଧର୍ମିଣୀତ୍ୱ

ଅବସ୍ଥା (State of existence), ବସ୍ତୁ (object),
ଆସକ୍ତି (attachment), ଉତ୍ତେଜନା (Stimulus & response) ଓ ବୋଧ (sensation)—
ଏଥିରୁହିଁ ଜ୍ଞାନର ଉତ୍ପତ୍ତି ;
ଆଉ, ଏହି ବୋଧ ଓ ଜ୍ଞାନରୁହିଁ
ମଣିଷ ଠିକ୍ କରି ନିଏ—
କେଉଁଟି ତାହାର ଜୀବନଯାପନର ଅନୁକୂଳ,
କେଉଁଟି ବା ତାହାର ଜୀବନ ପକ୍ଷରେ ପ୍ରତିକୂଳ ;
ଯାହା ଅନୁକୂଳ ମନେକରେ,
ତାହାହିଁ ତାହାର ଆନନ୍ଦର ହୋଇଉଠେ,



ପ୍ରତିକୂଳ ଯାହା, ତାହାହିଁ ତାହାର ଦୁଃଖର ;—
ଏହି ଅନୁକୂଳରେ ଅନୁରକ୍ତି ତାହାକୁ
ବିଷୟରୁ ବିଷୟାନ୍ତରରେ ଆକୃଷ୍ଟ କରି
ଉଦ୍‌ବିଗ୍ନ ଓ ଅଶାନ୍ତ କରିତୋଳେ—
ତାହାହିଁ ପ୍ରତିକୂଳ ହୋଇ ଛିଡ଼ାହୁଏ—
ଯେପରି ତାହାର ପାରିପାର୍ଶ୍ୱିକ ତାହାକୁ
ନିଃଶେଷ କରି ପକାଇବ ;
ପୁଣି,
ମଣିଷର ଅସ୍ତିତ୍ୱ ବା ଅବସ୍ଥାର ଚେତନା
ତାହାର ପାରିପାର୍ଶ୍ୱିକର ସଂଘାତରେହିଁ ଘଟିଥାଏ ;—
ତାହାର ପାରିପାର୍ଶ୍ୱିକ ତାହାକୁ
ଛିନ୍ନଭିନ୍ନ କରି ହଜମ କରିବାକୁ ଚାହେ,
କିନ୍ତୁ ଆପ୍ରାଣ ଚେଷ୍ଟାରେ—
ତାହାର ଅବସ୍ଥା ବା ସ୍ଥିତିକୁ
ରକ୍ଷା କରିବାକୁ ବ୍ୟତିବ୍ୟସ୍ତ ;
ଏହିପରି ବ୍ୟାପାରରେ—
ବଞ୍ଚିବା ଓ ବୃଦ୍ଧି ପାଇବାକୁ ବଞ୍ଚାଇବାକୁ ହେଲେହିଁ—
ପାରିପାର୍ଶ୍ୱିକର ଯେ କୌଣସି-ଗୋଟିକୁ—
ଯାହା ଜୀବନ ଓ ବୃଦ୍ଧିର ଅନୁକୂଳ—
ଯେଉଁଥିରେ ଜୀବନ ଓ ବୃଦ୍ଧି ସମୃଦ୍ଧ ହୁଏ
ସେଥିରେ ଅନୁରକ୍ତ ହେବାକୁ ହେବ—
ଆଉ, ଏଇଟିହିଁ ମଣିଷର ଇଷ୍ଟ, ଗୁରୁ ବା ଆଦର୍ଶ ;
ତେଣୁ,
ଯେ-ଜୀବନ ଆଦର୍ଶରେ ଅନୁପ୍ରାଣିତ ନୁହେଁ,
କର୍ମ ଯାହାର ବିଚ୍ଛୁରିତ ଓ ଉଦ୍ଦାମ ହୋଇ
ତାହାର ଇଷ୍ଟ ବା ଆଦର୍ଶକୁ

ପ୍ରତିଷ୍ଠା କରିବାର ଉଦ୍‌ବେଗ ବହନ କରେ ନା—
ସେ-ଜୀବନ ଯେ କାଳ ସ୍ରୋତରେ ଭାସି-ଭାସି
ମରଣ-ସୀମାକୁ ସ୍ପର୍ଶ କରିବ,
ସେଥିରେ ଆଉ ସନ୍ଦେହ କଅଣ ?
ତେଣୁ, ତୁମର ସ୍ୱାମୀ ଯଦି କୌଣସି ଇଷ୍ଟ ବା ଆଦର୍ଶରେ
ତାହାଙ୍କୁ ନ୍ୟସ୍ତ କରି ନ ଥାଆନ୍ତି,
ତାହାଙ୍କୁ ବୁଝାଇ,
ପ୍ରୟୋଜନର ପ୍ରୟୋଜନ ଦେଖାଇ
ଅବିଳମ୍ବେ ଆଦର୍ଶବାନ୍ କରିତୋଳ—
ସହଧର୍ମିଣୀ ହୁଅ,
ଅନୁସରଣ କର, ଚାଲ—
ଦେଖିବ—
ଜୀବନ, ଯଶ ଓ ବୃଦ୍ଧିରୁ
ବଞ୍ଚିତ ହେବ ନାହିଁ,
ତୃପ୍ତି, ସ୍ୱସ୍ତି ଓ ଶାନ୍ତି—
ତୁମମାନଙ୍କ ଜୟଗାନରେ
ଜାତି ଓ ଜଗତକୁ
ମୁଖର କରିତୋଳିବ ।୧୭୯।

## ସ୍ୱସ୍ତି

ତୁମେ ଭାବିପାର—
ତୁମର ସ୍ୱାମୀଙ୍କ ପ୍ରତି ବା ସଂସାର ପ୍ରତି
ଯାହା-କିଛି କରଣୀୟ—କେବଳ ତୁମରହିଁ,
କିନ୍ତୁ ବୁଝିରଖ—
ଭଲ ପାଇବାକୁ ହେଲେହିଁ
ଭଲ କରିବାକୁ ହୁଏ—



ତାହା ତୁମ ବେଳକୁବି ଯେପରି,
ଅନ୍ୟର ବେଳକୁବି ସେହିପରି ;—
ତୁମେ ଯଦି ଅନ୍ୟର ମଙ୍ଗଳପାଇଁ ଯାହା-କିଛି କରଣୀୟ—
ପାଇବାର ଆଶା ନ ରଖି—
ଯେତେଦୂର ସମ୍ଭବ—
ଉଦ୍‌ବେଗଶୂନ୍ୟ ଭାବରେ କରିଯାଇ ପାର,
ଦେଖିବ,
ପାଇବା ପାଇଁ ତୁମକୁ ଆଉ
ବ୍ୟାକୁଳ ହେବାକୁ ହେବ ନାହିଁ,
ପାଇବା ତ ଆସିବହିଁ—
ତୁମ ମନରେ ଅନ୍ତରୀକ୍ଷରେ
କିଏ ଯେପରି ଗାଇଉଠିବ,
'ସ୍ୱସ୍ତି ! ସ୍ୱସ୍ତି !! ସ୍ୱସ୍ତି !!!' ।୧୮୦।

**ସମାପ୍ତ**

